ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# କାଷ୍ଟର ବ୍ରିଜ୍‌ର ମେୟର୍



ଗ୍ରନ୍ଥମନ୍ଦିର

ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# କାଷ୍ଟରବ୍ରିଜ୍‌ର ମେୟର

[ Thomas Hardy ଙ୍କ ଲିଖିତ

The Mayor of Casterbridge ବହିର ସଂକ୍ଷିପ୍ତସାର । ]

ଅନୁବାଦକ :

ଶ୍ରୀ ବଂଶୀଧର ଦାସ, ବି.ଏ., ବି.ଇଡ଼ି.

ଗ୍ରନ୍ଥମନ୍ଦିର

# ଏକ

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗର କଥା ।

ଖରାଦିନ । ସନ୍ଧ୍ୟା ହୋଇଆସୁଥାଏ । ଓ୍ୱେଡ୍‌ନ୍‌ପ୍ରିଅର୍ସ ଗାଁମୁଣ୍ଡରେ ଦେଖାଗଲା, କାନ୍ଧରେ ଗଣ୍ଠିଲିପତ୍ର ଝୁଲାଇ ଗାଁପାଖ ବଡ଼ ସଡ଼କ ଦେଇ ଜଣେ କ୍ଷେତ-ମଜୁରିଆ ଚାଲିଛି । ଯୁବା ବୟସ; ସାଥିରେ ତା'ର ଯୁବତୀ ସ୍ତ୍ରୀ । ଧୂଳିଧୂସର ଲୁଗାପଟାରୁ ମନେହେଉଥିଲା ସେମାନେ ଅନେକ ଦୂରରୁ ଚାଲି ଚାଲି ଆସୁଛନ୍ତି । ଲୋକଟାର ଲମ୍ବା ଚଉଡ଼ା ଚେହେରା, ଗମ୍ଭୀର ମୁହଁ ଓ ଗର୍ବିତ ଚାହାଣିରୁ ଜଣାଯାଉଥିଲା ଅଭାବ ଓ ଦୁଃଖରେ ଭାଙ୍ଗିପଡ଼ିବା ପୂର୍ବରୁ ତା' ଭିତରେ ଗୋଟିଏ କ୍ରୋଧର ନିଆଁ ଜଳିଉଠୁଛି ।

ଦୁଇ ପ୍ରାଣୀ ସାଙ୍ଗହୋଇ ନୀରବରେ ଚାଲିଥାନ୍ତି । ଲୋକଟା କ'ଣ ଖଣ୍ଡେ ପୁରୁଣା କାଗଜ ଧରି ପଢ଼ି ଚାଲିଥାଏ; ସ୍ତ୍ରୀଟି ତା' ସହିତ ଚାଲିଛି ବୋଲି ସେ ଯେପରି ମୋଟେ ଜାଣେନା । ସ୍ତ୍ରୀର କାଖରେ ଛୁଆଟିଏ । ନୀରବତା ଭାଙ୍ଗି ଝିଅଟି ବେଳେ ବେଳେ ଟିକିଏ କାନ୍ଦିଉଠୁଥାଏ ।

ଗାଁମୁଣ୍ଡରେ ସେମାନେ ପହଞ୍ଚିଲେ । ଗାଁ ସେପଟ ତୋଟାମାନଙ୍କରୁ ଭାସିଆସୁଥାଏ ଲୋକ-କୋଳାହଳ ସହିତ ଢୋଲ ମହୁରୀର ମତୁଆଲା ତାନ । ସେ କେଉଁଆଡ଼କୁ ଯିବ ବୋଲି ଭାବୁଛି, ଏ ସମୟରେ ଗାଁଆଡୁ ଜଣେ ଚାଷୀ ବୁଢ଼ା ଆସି ପହଞ୍ଚିଗଲା । ଲୋକଟାକୁ ଦେଖି ବୁଢ଼ା ପଚାରିଲା, ''କାହାକୁ ଖୋଜୁଚ ?''

ମଜୁରିଆ ଜଣକ କହିଲା, ''କିଛି କାମଧନ୍ଦା ମିଳିଲେ କରନ୍ତି । କ୍ଷେତବାଡ଼ିରେ କିଛି କାମଦାମ ମିଳିବନାହିଁ ?''

ମୁହଁ ଶୁଖାଇ ବୁଢ଼ା କହିଲା, ''ଏ ବେଳକୁ କ'ଣ କ୍ଷେତବାଡ଼ି କାମ ବାକିଆ ଥାଏ ? କଟାକଟି ମଳାମଳି ସବୁ ଆସି ସଇଲାଣି ।''

''ସେପଟେ ତୋଟାମାନଙ୍କରେ କ'ଣ ଲୋକଗହଳି ଲାଗିଛି କି ?''

ଏ ମାସରେ ଆମ ଗାଁରେ ଗୋଟାଏ ବଡ଼ ମେଳା ହୁଏ । ଏ ଶବ୍ଦଟା ସେହି ମେଳା ପଡ଼ିଆରୁ ଆସୁଛି – କହି ଚଷା ବୁଢ଼ାଟି ନିଜ ବାଟରେ ଚାଲିଗଲା । ମଜୁରିଆଟି ସ୍ତ୍ରୀକୁ ନେଇ ଚାଲିଲା ମେଳା ପଡ଼ିଆ ଆଡ଼କୁ । ସେଠାରେ ଯାଇ

ପହଞ୍ଚିବା ବେଳକୁ ଦୁଇ ପ୍ରାଣୀ ଭୋକଶୋଷରେ ମଉଳି ପଡ଼ିଥାନ୍ତି । ଜଳଖିଆ ଦୋକାନ ଆଡ଼େ ଚାହୁଁ ଚାହୁଁ ସେ ଦେଖିଲା ଗୋଟାଏ ଦୋକାନ ମୁହଁରେ ଲେଖାହୋଇଛି, ''ଏଠାରେ ଭଲ ଚାଉଳି ମଦ ମିଳେ ।'' ସ୍ୱାମୀ ମଦ ଦୋକାନ ଆଡ଼େ ମୁହାଁଉଛନ୍ତି ଦେଖି ସ୍ତ୍ରୀ ତାକୁ ଗୋଟିଏ ତମ୍ବୁ ଆଡ଼କୁ ଦେଖାଇ କହିଲା, ''ଦେଖିଲଣି, ଦେଖିଲଣି, ସେଠି କ'ଣ ଭଲ ସିମେଇ ଖିରି ବିକାହୁଏ ବୋଲି ଲେଖାହୋଇଛି ! ସତ କହୁଛି, ମୁଁ ପିଲାଦିନୁ ସିମେଇ ଖିରି ଖାଇବାକୁ ଭାରି ଭଲପାଏ । ଆମ ଝିଅ ଏଲିଜାବେଥ୍ ଜେନ୍‌ର ବି ଖିରିରେ ଭାରି ଶ୍ରଦ୍ଧା ।''

— ହେଃ, ମୁଁ ସେ ଚିଜ ମୋଟେ ଖାଇନି; କେମିତି ଲାଗେ କେଜାଣି ?

ମଲା, ପଚାରିବାକୁ ଅଛି ! ଦୁଧ, ବାଦାମ, କିସ୍‌ମିସ କେତେ କ'ଣ ପଡ଼ିଥିବ । ଭାରି ସୁଆଦ ମ !'' କହି ସ୍ତ୍ରୀ ସ୍ୱାମୀକୁ ନେଇ ଖିରି ଦୋକାନରେ ତୁକେଇଦେଲା । ଦୋକାନ ଭିତରେ ଗ୍ରାହକମାନେ ଖୁନ୍ଦିଖାନ୍ଦି ହୋଇ ବସିଯାଇଥାନ୍ତି । ଗୋଟାଏ କୋଇଲା ଚୁଲି ଉପରେ ଗୋଟିଏ ବଡ଼ ଡେକ୍‌ଚିରେ ଖିରି ବସିଥାଏ । ଚାଳିଶ-ପଇଁଚାଳିଶ ବର୍ଷର ଜଣେ ମୋଟୀ ବୁଢ଼ୀ ବସି ଖିରି ଘାଣ୍ଟୁଥାଏ । ମଜୁରିଆ ଓ ତା' ସ୍ତ୍ରୀ ଯାଇ ଟେବୁଲ ପାଖରେ ବସୁ ବସୁ ଖିରି ବରାଦ କରିଦେଲେ ।

ଖିରିଟା ଭଲ ହୋଇଥିଲେ କ'ଣ ହେବ, ଲୋକଟା ପାଟିକୁ ବୋଧହୁଏ ସୁଆଦ ଲାଗିଲାନାହିଁ । ଦୁଇ ଚାରି ଚାମଚ ଖାଇସାରିବା ପରେ ସେ ହାତ ଟେକି ବସି ଖିରିୱାଲୀ ବୁଢ଼ୀକୁ ଚାହିଁରହିଲା । ବୁଢ଼ୀର କାରସାଦିଟା ବେଶୀ ସମୟ ତା' ଆଖିରେ ଲୁଚି ରହିପାରିଲାନାହିଁ । ସେ ଦେଖିଲା, ବୁଢ଼ୀ ତା' ଟେବୁଲ୍ ତଳେ କେତେଟା ବୋତଲ ଲୁଚାଇ ରଖିଛି । ଗ୍ରାହକ ଖିରି ନେବାବେଳେ ବୁଢ଼ୀ ଆଖିଠାରି ବୋତଲ ଦେଖେଇଦେଉଛି; ଗ୍ରାହକଠାରୁ ଇଙ୍ଗିତ ପାଇବାମାତ୍ରେ ବୋତଲରୁ କିଛିଟା — ମଦ ହେବ ନିଶ୍ଚୟ — ଖିରିରେ ଢାଳିଦେଉଛି । ମଜୁରିଆ ଜଣକ ଆଉ ବିଳମ୍ବ ନକରି ବୁଢ଼ୀଆଡ଼କୁ ଖିରି ସରାଟା ବଢ଼ାଇଦେଲା । ବୁଢ଼ୀ ସଙ୍ଗେ ସଙ୍ଗେ ସେଥିରେ କିଛିଟା ମଦ ମିଶାଇଦେଲା । ଏଥର ଖିରିର ସୁଆଦ ଦେଖେ କିଏ ! ଦଶ ମିନିଟ୍ ଭିତରେ ତିନି ସରା ଉଠିଗଲା । ତା' ଆଖିରେ ଜମିଆସିଲା ମଦର ନିଶା । ଅବସ୍ଥା ମଦଖଟିରୁ ବଳିଗଲା ଦେଖି ତା' ସ୍ତ୍ରୀ କହିଲା, ''ମାଇକେଲ୍, ଏଠି ସମୟ ନଷ୍ଟ କଲେ ରାତିକି ଆମ ଅବସ୍ଥା କ'ଣ ହେବ ବୁଝିପାରୁଚଟି ? ଅନ୍ଧାର ନ ହେଉଣୁ ମୁଣ୍ଡଗୁଞ୍ଜିବା ଲାଗି ଆଶ୍ରାଟିଏ ଖୋଜିବାକୁ ପଡ଼ିବ ।''

ନିଶାଖୋର ଲୋକ ମୁଣ୍ଡରେ ଏ ଚେତନା ସହଜରେ ପଶନ୍ତା କିପରି ! ସ୍ତ୍ରୀର ବାରଣ ସତ୍ତ୍ୱେ ଲୋକଟା ଚତୁର୍ଥ ସରା ଖିରି ବରାଦ କରିବସିଲା । ଖାଉ ଖାଉ ବକାବକି ଆରମ୍ଭ କରିଦେଲା । ଖିରିଖିଆ ଶେଷ ହେବା ବେଳକୁ ସେ ରୀତିମତ ଗୋଟାଏ କଳହ ସୃଷ୍ଟି କରିଦେଇଥାଏ । ସ୍ତ୍ରୀ ବିରୁଦ୍ଧରେ ଅଭିଯୋଗ ବାଢ଼ି ସେ କହିବାକୁ ଲାଗିଲା, ''ଅଠରବର୍ଷ ଦିନୁ ବେକରେ ଏଥିରୁ ଗୋଟାଏ ମାଇକିନିଆ ବାନ୍ଧି ମୁଁ ଯେଉଁ ହନ୍ତସନ୍ତ ହେଲିଣି, ସେକଥା ଆଉ କ'ଣ କହିବି, ଭାଇ ! ଖୁବ୍ ହୋଇଗଲା; କମେଇବି ଜଣେ, ଖାଇବାକୁ ତିନିଜଣ ! ଆଜିକାଲି ଭଲା କାମ କୋଉଠୁ ମିଳୁଚି ? କେତେ ବା ରୋଜଗାର – ଏ ?''

ମାତାଲ ସ୍ୱାମୀର ସେ ପ୍ରଳାପ ପ୍ରତି କର୍ଣ୍ଣପାତ ନକରି ସ୍ତ୍ରୀଟି ଛୁଆଟିକୁ ଆଦର କରିବାରେ ଲାଗିଥାଏ । ଲୋକଟା କିନ୍ତୁ କହିଚାଲିଲା, ''ମୁଁ ଭାଇ, କିଛି ନିକିମା ଲୋକ ନୁହେଁ; ମୋ ହାତରେ ଯେଉଁ କାମ କହିବ, ସେ କାମ ହେବ; କିନ୍ତୁ ପଇସା କାହିଁ ?'' ଟିକିଏ ଅଟକିଯାଇ ସେ ପୁଣି ଆରମ୍ଭ କରିଦେଲା, ''ତୁମ ଗାଆଁ ମେଳାରେ ଏତେ ଗାଈଗୋରୁ ବିକ୍ରି ହେଉଛନ୍ତି, ମଣିଷ ବିକ୍ରି ହେଉନାହାନ୍ତି ? ...ଆରେ ଭାଇ; କିଏସେ ଯଦି କିଣନ୍ତା, ସତ କହୁଛି, ଏଇ ମୁହୂର୍ତ୍ତରେ ମୁଁ ମୋର ଭାର୍ଯ୍ୟାଟାକୁ ବିକିଦିଅନ୍ତି ।''

ବିଚାରୀ ସ୍ତ୍ରୀଲୋକଟାର ମୁହଁ ଲାଲ୍ ପଡ଼ିଗଲା । ଧୀର କଣ୍ଠରେ ସେ କହିଲା, ''ମାଇକେଲ୍, ଏଇ କଥା ବହୁତ ଥର କହିଲଣି । ସବୁବେଳେ ଗୋଟାଏ ଥଟ୍ଟା କ'ଣ ମ ? ଏଗୁଡ଼ା ଭଲନୁହେଁ କହୁଚି ।''

–ହଁ ହଁ, ମୁଁ କହିଛି... କହିଛି କ'ଣ, ଏବେ ବି କହୁଛି, ନିଶ୍ଚୟ ବିକିଦେବି; ଖାଲି ଖରିଦ୍‌ଦାର ମିଳିଲେ ହେଲା । ଦୋକାନରେ ଖିରି ଖାଉଥିବା ଲୋକଙ୍କୁ ଲକ୍ଷ୍ୟ କରି ସେ ପୁଣି ପଚାରିବସିଲା, ''କ'ଣ ଭାଇ କେହି କିଣିବାବାଲା ଅଛି ? ମୋର ଏ ସ୍ତ୍ରୀ ଆଉ ଦରକାରନାହିଁ । କିଏସେ କିଣିବ କହ, ଏଇଲାଗେ ବିକିଦେବି ।

ସ୍ତ୍ରୀଲୋକଟିର ମୁହଁ କ୍ରୋଧ ଓ ବିରକ୍ତିରେ ଫାଟିପଡ଼ିଲା । ସେ ଗମ୍ଭୀର ହୋଇ କହିଲା, ''ମାଇକେଲ୍, ଅବସ୍ଥା ଭଲହେବନି କହୁଛି ।''

ମାଇକେଲ୍ କିନ୍ତୁ ଏ ସାବଧାନବାଣୀକୁ ଭ୍ରୂକ୍ଷେପ ନକରି ଦେଖଣାହାରିଙ୍କୁ ପଚାରିଚାଲିଲା, ''ଆରେ ଭାଇ, କିଏସେ କିଣିବ କହ ?''

ସ୍ତ୍ରୀଟି ରାଗିଯାଇ କହିଲା, ''ସତରେ ଯଦି କିଏସେ କିଣିନିଅନ୍ତା, ଖୁବ୍ ଭଲହୁଅନ୍ତା; ଏମିତି ଲୋକଙ୍କୁ ମୁଁ ମୋଟେ ପସନ୍ଦ କରେନି ।''

—ଶୁଣୁଛ, ଶୁଣୁଛ ଭାଇମାନେ ? – ମାଇକେଲ୍ ପାଟି କରି ଉଠିଲା, ''ଛାଡ଼୍-ଛୁଡ଼୍ ହୋଇଯିବା ଲାଗି ଆମେ ଉଭୟ ରାଜି । ସେ ଯଦି ଚାହେଁ, ତେବେ ସେ ତା' ଝିଅକୁ ନେଇ ଚାଲିଯାଇପାରେ ।''

ସ୍ତ୍ରୀ ସୁସାନକୁ ଦେଖାଇ ମାଇକେଲ୍ ନିଲାମ ଡାକ ଆରମ୍ଭ କରିଦେଲା, ''ଦେଖୁଛ, ଦେଖୁଛ ଭାଇମାନେ, ଦୁବଲାପତଲା କି କାଣୀ କୁଜୀ ନୁହେଁ । କିଏ ସେ ଖରିଦଦାର ଅଛ, ଡାକ ଧର । ଭାଇ, ପହିଲି ଡାକ କୋଡ଼ିଏ ଟଙ୍କା ରହିଲା; ମୋଟେ କୋଡ଼ିଏ ଟଙ୍କା ।''

ଖିରିବାଲୀ ବୁଢ଼ୀ ବିରକ୍ତ ହୋଇ କହିଲା, ''ଛିଃ, ଛିଃ, ଛି ବାପ ! କ'ଣ ଏମିତି ଅମଣିଷ ଭଳିଆ ହେଉଛୁ ! ଆହା ଲୋ ବିଚାରୀ କେଡ଼େ ନିଷ୍ଠୁର ଲୋକଟାର ହାତ ନଧରିଛୁ ସତେ !''

ମାଇକେଲ୍ ତେଣେ ନିଲାମ ଡାକରେ ବ୍ୟସ୍ତ । – ''କ'ଣ ହେଲା ? କେହି ଡାକ ଧରୁନା । ଆରେ ଭାଇ, ଗୋଟିଏ କୋଡ଼ି କ'ଣ, ମୁଁ ଯା ପିଛା ପଚାଶ କୋଡ଼ି ଟଙ୍କା ଖରଚ କରିଥିବି । ପହିଲୁ ଡାକ କୋଡ଼ିଏ ବୋଲି କ'ଣ ସତରେ ମୁଁ କୋଡ଼ିଏ ଟଙ୍କାରେ ଦେଇଦେବି ? କମ୍ ସେ କମ୍ ପାଞ୍ଚ କୋଡ଼ିରୁ ଟିକି ପଇସାଟିଏ ବି କମାଇବିନାହିଁ । ...ହେଲା ଏବେ; ପାଞ୍ଚ କୋଡ଼ି । କିଣିବାବାଲା କେହି ଅଛ ଏଠି ?''

ଦୋକାନ ଦୁଆର ପାଖରୁ ଗୁରୁଗମ୍ଭୀର କଣ୍ଠରେ କେହି ଜଣେ କହିଉଠିଲା, ''ହଁ, ମୁଁ କିଣିବି ।''

ସବୁରି ଆଖି ସେହିଆଡ଼କୁ ଚାଲିଗଲା । ଦୋକାନ ଦୁଆରମୁହଁରେ ଠିଆ ହୋଇଥିଲେ ଜଣେ ଜାହାଜୀ ନାବିକ । ମାଇକେଲ୍ କହିଲା, ''କିଣିବି ବୋଲି ଖାଲି ମୁହଁ ଭୁରୁଡୁ କଲେ ତ ଚଳିବନାହିଁ ବାବୁ, ଟଙ୍କା ବାହାର କରନ୍ତୁ ।'' ନାବିକ ଜଣକ ସୁସାନ ଉପରେ ଆଉ ଥରେ ଆଖି ବୁଲାଇଆଣି ସିଧା ଟେବୁଲ୍ ପାଖକୁ ଚାଲିଆସିଲେ ଏବଂ ପକେଟରୁ ପାଞ୍ଚଖଣ୍ଡି କୋଡ଼ିଏ ଟଙ୍କିଆ ନୋଟ୍ ବାହାର କରି ଟେବୁଲ ଉପରେ ଥୋଇଦେଲେ । ସେପର୍ଯ୍ୟନ୍ତ କେହି ଭାବିନଥିଲେ ଯେ ମଙ୍କୁରିଆଟା ସତରେ ତା' ଭାରିଯାକୁ ବିକିଦେଉଛି । ସେମାନେ କେବଳ ମଜା ଦେଖୁଥିଲେ; ଦେଖୁଥିଲେ ନିଶାଭୋଳରେ ଲୋକଟା କିପରି ମଜାଦାର କଥା ସବୁ କହିଚାଲିଛି; କିନ୍ତୁ ଟେବୁଲ୍ ଉପରେ ନୋଟ୍ ଦେଖିବାମାତ୍ରେ ସମସ୍ତଙ୍କ ମୁହଁରୁ ହସ ମରିଗଲା । ସମସ୍ତେ ତଟସ୍ଥ ହୋଇ ଚାହିଁରହିଲେ ।

ନୀରବତା ଭାଙ୍ଗି ସ୍ତ୍ରୀଲୋକଟି ଦୃଢ଼ ଅଥଚ କ୍ଷୀଣ କଣ୍ଠରେ କହିଲା, "ଖୁବ୍ ହୋଇଗଲା ମାଇକେଲ୍, ଖୁବ୍ ହୋଇଗଲା । ଶୁଣ କହୁଛି, ସେ ଟଙ୍କାରେ ଯଦି ହାତ ଦିଅ, ତେବେ ସତ କହୁଛି ମୁଁ ମୋ ଝିଅକୁ ନେଇ ସେ ଲୋକ ସହିତ ଚାଲିଯିବି । ଦେଖିବ, ସେତେବେଳେ ଥଟ୍ଟାଟା ସତ ହୋଇଯିବ ।"

"ଥଟ୍ଟା ! ଥଟ୍ଟା ବୋଲି କିଏସେ କହିଲା ଲୋ ? ଦେଖେ, ମୁଁ ଟଙ୍କା ଉଠେଇ ନେଉଛି । ଏଥର ସେ ନାଉରିବାବୁ ତତେ ନେଇଯାଆନ୍ତୁ ।"

ନାବିକ ଜଣକ ଧୀର କଣ୍ଠରେ କହିଲେ, "କିନ୍ତୁ ତାଙ୍କର ଯଦି ଇଚ୍ଛା ନାହିଁ, ମୁଁ ବଳକ୍ରାରେ କିଣି ନେବାକୁ ଚାହେଁନା । ବୃଥାଟାରେ କାହାରି ମନରେ କଷ୍ଟ ଦେବା ଉଚିତନୁହେଁ ।"

—ଆହେ ବାବୁ, ତା'ର ଷୋଳଣା ଇଚ୍ଛା ଅଛି । କେବଳ ସେ ଏତିକି ଚାହେଁ ଯେ ସେ ତା' ଝିଅକୁ ସାଙ୍ଗରେ ନେଇଯିବ ।

—ସତେ ?

ହଁ । — ନମ୍ର କଣ୍ଠରେ ସୁସାନ କହିଲା ।

ନାବିକଙ୍କ ମୁଖରେ ଫୁଟିଉଠିଲା ଗୋଟିଏ ମଧୁର ହସ । ସେ କହିଲେ, "ତା' ହେଲେ ଆସନ୍ତୁ, ଝିଅଟିକୁ ସାଙ୍ଗରେ ଆଣିଲେ ତ ଆହୁରି ଖୁସିର କଥା ହେବ ।"

ସୁସାନ ଠିଆହୋଇ କିଛି ସମୟ ମାଇକେଲ୍ ମୁହଁକୁ ଚାହିଁଲା । ସେ ନିର୍ବୋଧ ମୁହଁକୁ ଦେଖି ଆଖି ତା'ର ଆପେ ଆପେ ତଳକୁ ନଇଁଆସିଲା । ଛୁଆଟିକୁ କାଖରେ ଧରି ସେ ନାବିକଙ୍କ ସହିତ ଦୋକାନ ଦୁଆର ପର୍ଯ୍ୟନ୍ତ ଚାଲିଆସିଲା । ଦୁଆରମୁହଁରେ ଟିକିଏ ଅଟକିଯାଇ ଆଙ୍ଗୁଠିରୁ ବିବାହ ମୁଦିଟି ବାହାର କରି ସେ ମାଇକେଲ୍ ଉପରକୁ ଫୋପାଡ଼ିଦେଲା । ମାଇକେଲ୍ କିନ୍ତୁ ଟଙ୍କାତାଡ଼ା ଉପରେ ହାତ ପକାଇ ଗୋଟାଏ ମଡୁଆଲା ହସରେ ଫାଟିପଡ଼ିଲା । କଇଁ କଇଁ ହୋଇ କାନ୍ଦିଉଠିଲା ସୁସାନ । ତା'ର ଡାହାଣ ହାତ ଯାଇ ଛନ୍ଦିହୋଇଗଲା ନାବିକଙ୍କ ବଳିଷ୍ଠ ବାହୁରେ । ବାଆଁ କାଖରେ ଛୁଆଟିକୁ ଧରି ଆଖିରୁ ଲୁହ ଝରାଇ ଝରାଇ ସେ ଚାଲିଗଲା ତାଙ୍କରି ପଛରେ ।

ମାଇକେଲ୍ ନିଶାଭୋଳରେ ହସି ହସି ନୋଟତକ ଆଣି ପକେଟରେ ପୂରାଇଦେଲା ଏବଂ ଟେବୁଲ୍ ଉପରେ ଭରାଦେଇ ଆଖି ବୁଜିଦେଲା ଏକ ଗଭୀର ନିଦରେ । ବାହାରେ ଅନ୍ଧାର ଜମିଆସୁଥାଏ । ଗ୍ରାହକମାନେ ଗୋଟି ଗୋଟି ହୋଇ

ଯେ ଯାହା ବାଟରେ ଚାଲିଗଲେ । ବୁଢ଼ୀ ତା'ର ଦୋକାନ ବନ୍ଦ କରିବାର ଉପକ୍ରମ କଲା । ମାଇକେଲ୍‌ର ନିଦ କିନ୍ତୁ ଭାଙ୍ଗିଲାନାହିଁ । ସେ ସେମିତି ଶୋଇଥାଏ । ବୁଢ଼ୀ ତା'ର ଦୋକାନ ଉଠାଇ ଚାଲିଗଲା ।

ରାତି ପାହି ଖରା ପଡ଼ିବାବେଳକୁ ମାଇକେଲ୍‌ର ନିଦ ଭାଙ୍ଗିଲା । ନିଶା ଛାଡ଼ିଯାଇଥାଏ । ଚାରିଆଡ଼ ଶୂନ୍‌ଶାନ୍ ଦେଖି ସେ ପ୍ରଥମେ କିଛି ବୁଝିପାରିଲା ନାହିଁ । ଭଙ୍ଗା ଟେବୁଲ୍ ଉପରେ ତା'ର ସେହି ଗଣ୍ଡିଲିଟି ସେମିତି ପଡ଼ିଥାଏ । ଅଇଁଠାଖିରି ସରାଗୁଡ଼ାକ ଏଣେତେଣେ ଗଡୁଥାଏ; ଏଠି ସେଠି ବିଛେଇ ହୋଇ ପଡ଼ିଥାଏ ମଦ ବୋତଲର ଠିପିଗୁଡ଼ାକ । ହଠାତ୍ ତା'ର ଆଖି ପଡ଼ିଗଲା ଭଙ୍ଗା ସରାଗଦା ଉପରେ ପଡ଼ିଥିବା ଗୋଟାଏ ଚକେଚକିଆ ଜିନିଷ ଉପରେ । ସେ ଉଠିଯାଇ ଦେଖେ ତ, ସେଇଟା ତା ସ୍ତ୍ରୀ ସୁଆନ ହାତର ବାହାବେଳର ମୁଦି । ସେ ଚମକିପଡ଼ିଲା । ଧୀରେ ଧୀରେ ତା' ଆଖିଆଗରେ ଖେଳିଗଲା ଗତ ସନ୍ଧ୍ୟାର କେତେଟା ଅସ୍ପଷ୍ଟ ଚିତ୍ର । ସେ ପକେଟରେ ହାତ ମାରି ଦେଖିଲା । ହଁ ତ, ପକେଟରେ ପାଞ୍ଚଟା କୋଡ଼ିଏ ଟଙ୍କିଆ ନୋଟ୍ ରହିଛି । ନା, ସ୍ୱପ୍ନ ନୁହେଁ, କଥାଟା ସତ । ସେ ନାଉରିଟା ତା'ହେଲେ ସତରେ ସୁସାନଙ୍କୁ କିଣି ନେଇଗଲା !! ଗୋଟାଏ ଗଭୀର ଚିନ୍ତାରେ ବୁଡ଼ିଗଲା ମାଇକେଲ୍ । ଶେଷରେ ତା' ପାଟିରୁ ବାହାରିଆସିଲା, ''ସୁସାନ ତା' ହେଲେ ଚାଲିଗଲା ! ଏଲିଜାବେଥ୍ ଜେନ୍‌କୁ ସାଙ୍ଗରେ ନେଇ ସେ ତାହାହେଲେ... ! ଆରେ, ଏତକ ଜାଣିପାରିଲା ନାହିଁ । ମୁଁ ପରା ନିଶାଭୋଳରେ ଥିଲି, ମୋର କ'ଣ ହୋସ୍ ଥିଲା ?''

ତା' ହୃଦୟଟା ଦୁଃଖ ଓ ନୈରାଶ୍ୟରେ ବିଦୀର୍ଣ୍ଣ ହୋଇଗଲା । ମେଳା ପଡ଼ିଆ ଭିତରେ ସେ ପାଗଳଙ୍କ ପରି ଏଣେତେଣେ ବୁଲିବାକୁ ଲାଗିଲା । ପରେ ଆତ୍ମସ୍ଥ ହୋଇ ସେ ମନେ ମନେ ଦୃଢ଼ ପ୍ରତିଜ୍ଞା କଲା ଯେ ତା'ର ସ୍ତ୍ରୀ ଓ ଆଦରର କନ୍ୟାକୁ ନିଶ୍ଚୟ ଖୋଜି ବାହାର କରିବ । କିନ୍ତୁ ଖୋଜିବାକୁ ବାହାରିବା ପୂର୍ବରୁ ମାଇକେଲ୍ ଗ୍ରାମ ଚର୍ଚ୍ଚକୁ ଯାଇ ଶପଥ କଲା – ''ହେ ପରମେଶ୍ୱର ! ତୁମକୁ ସାକ୍ଷୀ ରଖି ମୁଁ ମାଇକେଲ୍ ହେଞ୍ଚାର୍ଡ୍ ଶପଥ କରୁଛି ଯେ ଆଜିଠାରୁ ଏକୋଇଶ ବର୍ଷ ପର୍ଯ୍ୟନ୍ତ ମୁଁ ଆଉ କୌଣସି ଦିନ ମଦ ଛୁଇଁବି ନାହିଁ ।''

କିଛି ସମୟ ନୀରବ ପ୍ରାର୍ଥନା ପରେ ସେ ଦୃଢ଼ଚିତ୍ତ ହୋଇ ସ୍ତ୍ରୀ ଓ କନ୍ୟାର ଅନ୍ୱେଷଣରେ ବାହାରିପଡ଼ିଲା । ପାଖଆଖ ସବୁଆଡ଼ ଖୋଜିଗଲା । ନିନ୍ଦା ଅପମାନକୁ ଭ୍ରୂକ୍ଷେପ ନକରି ସେ ଯେଉଁଠି ପାରିଲା ସୁସାନ ଓ ଏଲିଜାବେଥ୍

ଢେନ୍ ବିଷୟ ପଚାରି ବୁଝିଲା; କିନ୍ତୁ ସବୁ ଚେଷ୍ଟା ବ୍ୟର୍ଥ ହେଲା । ଦିନ ପରେ ଦିନ ବିତିଗଲିଲା; ଅଥଚ ସୁସାନ, ଏଲିଜାବେଥ୍ କିମ୍ବା ସେହି ଜାହାଜୀ ନାବିକଙ୍କର କୌଣସି ସନ୍ଧାନ ମିଳିଲା ନାହିଁ । ଲୋକଟିର ନାମଟା ଜାଣିଥିଲେ ଅବା କିଛି ଖୋଜଖବର ମିଳନ୍ତା; କିନ୍ତୁ ସେ ତ ତାଙ୍କ ନାମ ପଚାରି ବୁଝିନଥିଲା । ମାସ ମାସ ଧରି ଖୋଜିବୁଲିବା ପରେ ହଠାତ୍ ଦିନେ ଗୋଟାଏ ବନ୍ଦର ପାଖରେ ଖବର ମିଳିଲା ଯେ ତା'ରି ବର୍ଣ୍ଣନା ସହିତ ମିଶିଯାଉଥିବା ଜଣେ ନାବିକ ସ୍ତ୍ରୀ ଓ ଛୋଟ ଝିଅଟିଏ ଧରି ଅଳ୍ପ କିଛି ଦିନ ତଳେ କାନାଡ଼ା ଚାଲିଗଲେ ।

ମାଇକେଲ୍ ଧରିନେଲା ଏ ନିଶ୍ଚୟ ସେହି ନାବିକ; ସୁସାନ ଓ ଏଲିଜାବେଥ୍‌କୁ ଆଉ ଖୋଜି ପାଇବା ଅସମ୍ଭବ । ମନକୁ ସାନ୍ତ୍ୱନା ଦେଇ ବଞ୍ଚିବାର ଏକ ନୂତନ ଅଭିଳାଷ ନେଇ ସେ ଚାଲିଆସିଲା ତା'ର ଚିର ଈପ୍‌ସିତ ଉଏସେକ୍‌ସ ଅଞ୍ଚଳକୁ । ବହୁ ଦିନରୁ ତା'ର ଗୋଟାଏ ବାସନା ଥିଲା, ଏଇଠି ଏହି ଜିଲ୍ଲାରେ ଖଣ୍ଡେ ଘର କରି ଛୁଆପିଲା ନେଇ ଜୀବନଟା କଟାଇବ । ଛୁଆପିଲା ତ ଗଲେ, ଅନ୍ତତଃ ନିଜ ଜୀବନଟା ଗଢ଼ିବାକୁ ପଡ଼ିବ ଭାବି ଉଏସେକ୍‌ସର କାଷ୍ଟରବ୍ରିଜ୍ ସହରରେ ଯାଇ ପହଞ୍ଚିଗଲା ।

## ଦୁଇ

ଅନେକ ବର୍ଷ ପରର କଥା –

ଉଏଡନ୍ ପ୍ରିୟର୍ସ ଗାଁ ପାଖ ଦେଇ ଯାଇଥିବା ସଡ଼କରେ ପୁଣି ଧୂଳି ଉଡ଼ି ବୁଲିଲା । ଦେଖାଗଲା ଅନେକ ବର୍ଷ ତଳେ ହେଞ୍ଚାର୍ଡ଼ ପରିବାରର ତିନିଜଣ ଲୋକ ଯେଉଁ ସ୍ଥାନକୁ ଆସିଥିଲେ, ସେହିଦିନ ବି ସେହି ପରିବାର ସହିତ ସଂପୃକ୍ତ ଦୁଇଜଣ ଲୋକ ଠିକ୍ ସେହି ସ୍ଥାନକୁ ଚାଲିଛନ୍ତି । ଆଗରେ ଚାଲିଛନ୍ତି ଜଣେ ଭଦ୍ରମହିଳା । ଅତୀତରେ ଯେଉଁମାନେ ଦେଖିଥିଲେ, ବର୍ତ୍ତମାନ ସେମାନେ ଦେଖିଲେ ଦୋ-ଦୋ ଚିହ୍ନା ହେବେ, ଭଦ୍ରମହିଳା କିନ୍ତୁ ସେହି ମାଇକେଲ୍ ହେଞ୍ଚାର୍ଡ଼ ପରିବାରର ବୋହୂ । ଆଗରେ ସେ ଯୁବତୀସୁଲଭ ସୁଢ଼ଳ ସୁନ୍ଦର ମାଂସଳ ମୁହଁଟି ଆଜି ଶୁଖି ମଉଳିଯାଇଛି, କେଶସଜ୍ଜାର ସେ ଚାକଚକ୍ୟ ଆଉ ନାହିଁ । ପନ୍ଧିଛନ୍ତି ଖଣ୍ଡିଏ କଳା ପୋଷାକ – ସଦ୍ୟ ବୈଧବ୍ୟର ସଙ୍କେତ । ସାଙ୍ଗରେ ତାଙ୍କର ଜଣେ ଅଠରବର୍ଷର ଯୁବତୀ । ତା' ଦେହରେ ବି କଳା ପୋଷାକ, ମୁହଁରେ

ଉକ୍‌ଣ୍ଠାର ଦାଗ; ତଥାପି ସେ ସୁନ୍ଦର ମୁହଁଟିକୁ ଚାହିଁଦେଲେ କାହାରି ସନ୍ଦେହ ରହିବନାହିଁ ଯେ ସେ ହେଉଛି ସୁସାନ୍ ହେଞ୍ଚାର୍ଡ଼ର ଯୁବତୀ କନ୍ୟା ଏଲିଜାବେଥ୍ – ହଁ, ଏଲିଜାବେଥ୍ ଜେନ୍ ।

ସେଦିନ ବି ମେଳା ବସିଥାଏ । ମାଆ ଝିଅ ଉଭୟେ ଗାଆଁ ମୁଣ୍ଡରୁ ମେଳା ପଡ଼ିଆକୁ ଚାଲିଲେ । ଲୋକଗହଳି କଟାଇ ଜଳଖିଆ ଦୋକାନ ଧାଡ଼ି ଧରି ମାଆ ଚାଲିଛନ୍ତି ଦେଖି ଝିଅ ପଚାରିଲା, ''ବୃଥାରେ ଏ ଗହଳିରେ କାହିଁକି ପଶୁଛ କହିଲ, ମାଆ ?''

—ବୃଥାରେ ନୁହେଁ ମା' ମୋତେ କାହିଁକି ଏ ଜାଗାଟା ଭାରି ଭଲଲାଗେ ।

—କାହିଁକି ?

—ମି. ନ୍ୟୁସନଙ୍କ ସହିତ ଏଇଠିହିଁ ମୋର ପ୍ରଥମ ସାକ୍ଷାତ୍ ହୋଇଥିଲା ।

—ସତେ ? ବାପାଙ୍କ ସହିତ ତୁମର ଏଇଠି ପ୍ରଥମେ ଦେଖାହୋଇଥିଲା ? – ହାୟ, ବାପା ବଞ୍ଚିଥାନ୍ତେ କି, ଏ ଜାଗାଟା ଦେଖିଲେ ସତରେ ଭାରି ଖୁସି ହୁଅନ୍ତେ ।'' – କହୁ କହୁ ଝିଅଟି ପକେଟ୍‌ରୁ ଖଣ୍ଡେ କାର୍ଡ ବାହାର କରି ସଜଳ ନୟନରେ ଚାହିଁରହିଲା । କାର୍ଡଟିରେ ଲେଖାଥିଲା – 'ନାବିକ ରିଚାର୍ଡ ନ୍ୟୁସନ୍‌ଙ୍କର ସସ୍ନେହ ସ୍ମୃତିରେ । ୧୮୪... ନଭେମ୍ବର ଶେଷାର୍ଦ୍ଧରେ ଏକଚାଳିଶ ବର୍ଷ ବୟସରେ ସେ ଗଭୀର ସାଗରବକ୍ଷରେ ସଲିଳସମାଧି ଗ୍ରହଣ କଲେ ।'

ମାଆ ତେଣେ ଭାବବିହ୍ୱଳା ହୋଇ କହିଚାଲିଲେ, ''ଏବଂ ଆମେ ବର୍ତ୍ତମାନ ଯାହାଙ୍କୁ ଖୋଜିବାକୁ ଆସିଛୁ, ସେହି ମି. ମାଇକେଲ୍ ହେଞ୍ଚାର୍ଡ଼ଙ୍କ ସହିତ ଏଇଠି ମୋର ଶେଷ ଦେଖା ।''

—ଆଚ୍ଛା, ସେ ଆମର କ'ଣ ହୁଅନ୍ତି କି, ମାଆ ? ମୁଁ ତାଙ୍କ ସହିତ ଆମର ସମ୍ପର୍କଟା ଠିକ୍ ଧରିପାରୁନି ।

—ସେ ହେଉଛନ୍ତି... ସେ ଥିଲେ... ତାଙ୍କ ସହିତ ମୋର ବୈବାହିକ ସମ୍ପର୍କ ଥିଲା ।

—ସେ ତାହାହେଲେ ମୋ କଥା ମୋଟ ଜାଣନ୍ତି ନାହିଁ । – ସରଳା ଯୁବତୀର ମନକଥା ବାହାରିପଡ଼ିଲା ।

ସୁସାନ ହଠାତ୍ କିଛି କହିପାରିଲେ ନାହିଁ । ଅଧର ତାଙ୍କର ଥରିଉଠିଲା । ''ହଁ, ତା' ନୁହେଁ କ'ଣ ।... ଆଚ୍ଛା ଆସିଲୁ, ସେଠିକି ଟିକିଏ ଯିବା ।'' କହି ଝିଅକୁ ନେଇ ସେ ମେଳାର ଅନ୍ୟ ଗୋଟାଏ ଅଂଶଆଡ଼େ ଚାଲିଗଲେ । ଗୋଟାଏ

ଝଙ୍କାଳିଆ ଗଛତଳେ ବସିଥିବା ଗୋଟାଏ ଛୋଟ ଦୋକାନ ଆଡ଼େ ଚାହିଁରହି ଶ୍ରୀମତୀ ନ୍ୟୁସନ୍ କହିଲେ, ''ଠିକ୍ କରି କହିପାରୁନି; ଗଲୁ ସେ ଦୋକାନରେ ମାଲିକ କିଏ ସେ ବସିଛି ଦେଖି ଆସିବୁ ।''

ଝିଅଟି ଯାଇ ଦୋକାନ ଭିତରକୁ ଚାହିଁଲା । ଦେଖିଲା – ଚିରା ଲେଙ୍କଡ଼ା ଲୁଗାପଟା ପିନ୍ଧି ଜଣେ ପାଚିଲା ବୁଢ଼ୀ ଚୁଲିରେ ଗୋଟିଏ ଡେକ୍‌ଚି ବସାଇ ଗୋଟାଏ ଲମ୍ବା ଚଟୁରେ କ'ଣ ଘାଣ୍ଟୁ ଘାଣ୍ଟୁ ମଝି ମଝିରେ ଡାକିଉଠୁଛି, ''ବଢ଼ିଆ ସିମେଇ ଖିରି, କିଏ ଖାଇବ ଆସ ।''

ଝିଅ ପଛେ ପଛେ ଯାଇ ଶ୍ରୀମତୀ ନ୍ୟୁସନ୍ ସେହି ଦୋକାନ ପାଖରେ ପହଞ୍ଚିଗଲେ । ଦେଖିଲେ କିଏ ସେହି ବୁଢ଼ୀ । ଆଜିକାଲି ତା'ର ବ୍ୟବସାୟ ଆଉ ପୂର୍ବଭଳି ନାହିଁ । ବୁଢ଼ୀ ଗୋଟାଏ ଗଛତଳେ ବସି ସିମେଇ ଖିରି ବିକୁଛି । ଝିଅକୁ ଡାକିନେଇ ସୁସାନ କହିଲେ, ''ତୁ ଯାଇ ମେଳା ଦେଖୁଥା'କି, ମୁଁ ବୁଢ଼ୀ ସାଙ୍ଗରେ ଦି'ପଦ କଥା ହୁଏ ।''

ତାଙ୍କୁ ଦେଖି ଦେଖି ବୁଢ଼ୀ କହିଉଠିଲା, ''ଟିକିଏ ଖିରି ଖାଅ ମାଆ; ଦୋକାନ ସିନା ଏମିତି ଦେଖୁଛ, ହେଲେ ମାଲ ବଢ଼ିଆ ।''

ସରାଏ ଖିରି ନେଇ ଖାଇବାର ବାହାନା କରୁ କରୁ ସୁସାନ ପଚାରିଲେ, ''ଆଗେ ବୋଧହୁଏ ବ୍ୟବସାୟ ଭଲ ଚାଲୁଥିଲା, ନୁହେଁ ?''

–ଆହା, ସେକଥା କାହିଁକି ପଚାରୁଛ ମାଆ ! ମେଳା ପଡ଼ିଆରେ ଦୋକାନ ଖୋଲିବାର ମୋର ଏକଚାଳିଶ ବର୍ଷ ହୋଇଗଲା । ଏଇ ଆଖିରେ କେତେ ଲୋକ ଦେଖିଛି, କେତେ ପଇସା ଦେଖିଛି, ମାଆ !

–ଆଚ୍ଛା ମାଉସୀ, ସତର ଅଠର ବର୍ଷ ତଳେ ଏଇ ମେଳାବେଳେ ତୁମ ଦୋକାନରେ ଜଣେ ଲୋକ ତାଙ୍କ ଭାରିଯାଟାକୁ ବିକିଦେଇଥିଲେ ନା ?

ବୁଢ଼ୀ ଆଖିବୁଜି ମୁଣ୍ଡ ହଲେଇ ହଲେଇ ଘଟଣାର କିଛିଟା ସ୍ମରଣ କରି କହିଲା, ''ହଁ, ହଁ... ମନେପଡୁଛି; ଠିକ୍ କହିଛ । ମୋରି ଦୋକାନ ଭିତରେ ତ ମଦ ଖାଇ ମାତାଲ ହୋଇ ତାହା ପରା ଭାର୍ଯ୍ୟାଟାକୁ ଟଙ୍କା ପାଞ୍ଚ କୋଡ଼ିରେ ବିକିଦେଲା ।''

ବୁଢ଼ୀର ସ୍ମୃତିଶକ୍ତିକୁ ତାରିଫ କରି ସୁସାନ୍ ପଚାରିଲା, ''ଆଚ୍ଛା, ପରେ ସେ ଲୋକ ଜଣକ ଗଲେ କୁଆଡ଼େ ?''

ବୁଢ଼ୀ କହିଲା, ''ଦୋକାନରେ ତ ଶୋଇଥିଲା; ସକାଳୁ ଉଠି କୁଆଡ଼େ ଗଲା କେଜାଣି ? ତେବେ... ହଁ, ହଁ, ଅବିକା ମନେପଡୁଛି ତା' ପର ସାଲ

ମେଳାବେଳେ ଭାର୍ଯ୍ୟାର ଖୋଜ-ଖବର ନେବାଲାଗି ଲୋକଟା ଫେର୍ ମୋ ଦୋକାନକୁ ଆସିଥିଲା । ସେ ବିଚାରୀ କୁଆଡ଼େ ଗଲା, ମୁଁ କି ଜାଣେ ? ଲୋକଟା ଏଠି ବହୁତ ଖୋଜାଖୋଜି କରିବା ପରେ ମତେ କହିଗଲା, ଯଦି ତା' ଭାର୍ଯ୍ୟା କେବେ ଫେରେ, ତେବେ କହିଦେବି ଯେ ସେ... କେଉଁଠି ଟି...ଏଁ... କାଷ୍ଟରବ୍ରିଜ ସହରରେ ରହୁଛି । କେତେ ବରଷର କଥା ହେଲାଣି, ଭୁଲିଯାଇଥିଲି ମା' !''

ବୁଢ଼ୀକୁ ଧନ୍ୟବାଦ ଦେଇ ସୁସାନ ଝିଅ ପାଖକୁ ଆସୁ ଆସୁ ଝିଅ ପଚାରିଲା, ''କ'ଣ, ତାଙ୍କ ଠିକଣା ମିଳିଲା, ମାଆ ?'' ସୁସାନ କହିଲେ, ''ମିଳିଲା ଯେ, ସେ ଏଠୁ ବହୁତ ଦୂରରେ, କାଷ୍ଟରବ୍ରିଜ ସହରରେ ରହୁଛନ୍ତି, ତା' ମଧ ବହୁତ ବର୍ଷ ତଳେ ଥରେ ଆସିଥିଲେ ଯେ କହୁଥିଲେ । ଆଜି ରାତିଟା ଏ ଗାଁ ହୋଟେଲରେ ରହିଯିବା, କାଲିକି କାଷ୍ଟରବ୍ରିଜ ଯାଇ ଖୋଜ ଖବର ନେବା; ଯଦି ଥିବେ, ନିଶ୍ଚୟ ଦେଖାହେବ ।''

ଝିଅ ଆଗରେ ସବୁ ସତକଥାଗୁଡ଼ିକ ଖୋଲି କହିଦେବାକୁ ସେ ଉଚିତ ମନେକଲେନାହିଁ । ନ୍ୟୁସନ୍ ତାଙ୍କୁ କିଣିଥିଲେ, ତେଣୁ ସେ ଧରିନେଇଥିଲେ ଯେ ତାଙ୍କ ଉପରେ ନ୍ୟୁସନ୍‌ଙ୍କର ଗୋଟାଏ ଅଧିକାର ରହିଛି । ବିବାହ ନକରି ବି ସେ ନ୍ୟୁସନ୍‌ଙ୍କର ସ୍ତ୍ରୀରୂପେ କାନାଡ଼ା ଚାଲିଯାଇଥିଲେ । ବହୁଦିନ ଧରି କାନାଡ଼ାରେ ରହିବା ପରେ ନ୍ୟୁସନ୍ ଦମ୍ପତି ପୁଣି ଇଂଲଣ୍ଡ ଫେରିଆସି ଫଲମାଉଥ୍‌ଠାରେ ଅବସ୍ଥାନ କଲେ । ଏଲିଜାବେଥ୍ ଜେନ୍‌ର ବୟସ ସେତେବେଳକୁ ବାର । ଫଲମାଉଥ୍‌ଠାରେ କିଛି ଦିନ ରହିବା ପରେ ନାବିକ ନ୍ୟୁସନ୍ କିଛିଦିନ ଲାଗି ଘର ଛାଡ଼ି ନ୍ୟୁଫାଉଣ୍ଡଲାଣ୍ଡ ଚାଲିଯାଇଥିଲେ । ନ୍ୟୁସନ୍‌ଙ୍କର ସେହି ଅନୁପସ୍ଥିତି ସମୟରେହିଁ ସୁସାନଙ୍କ ଜୀବନରେ ଦେଖାଦେଲା ଦୁଃଖର ଛାୟା । ଜଣେ ପଡ଼ୋଶୀଙ୍କ ସହିତ କଥାଭାଷା ହେଉ ହେଉ ସେ ଜୀବନର ସବୁ କାହାଣୀ କହିପକାଇଲେ । ସବୁ ଶୁଣି ପଡ଼ୋଶୀ ଜଣକ କହିଲେ, ''ଯେତେ ଯାହାହେଲେ କ'ଣ ହେଲା, ନ୍ୟୁସନ୍ ତାଙ୍କର ସ୍ୱାମୀ ହୋଇନପାରନ୍ତି । ଏ ସମ୍ପର୍କଟା ଅବୈଧ; ତେଣୁ ତାଙ୍କର କୌଣସି ସମ୍ପତ୍ତି ଉପରେ ସୁସାନଙ୍କର କୌଣସି ଆଇନଗତ ଅଧିକାରନାହିଁ । ସେହିଦିନଠାରୁ ସୁସାନଙ୍କ ମନରେ ଦେଖାଦେଲା ଦ୍ୱନ୍ଦ୍ୱ ଓ ଅନୁତାପ । କିଛି ଦିନ ପରେ ନ୍ୟୁସନ୍ ଯେତେବେଳେ ନ୍ୟୁଫାଉଣ୍ଡଲାଣ୍ଡ ଫେରିଲେ, ସେତେବେଳେ ସୁସାନ ତାଙ୍କୁ ସବୁ କଥା କହିଲେ । ବିଚାରା ନ୍ୟୁସନ୍ ବି ଏ ଅବୈଧ ସମ୍ପର୍କ ବିଷୟରେ ସଚେତନ ନଥିଲେ । ସୁସାନଙ୍କ ମୁହଁରୁ ଏସବୁ ଶୁଣିବା

ପରେ ସେ ଚିନ୍ତାରେ ପଡ଼ିଗଲେ । ତା' ପରଦିନ ଦେଖାଗଲା, ସେ ହଠାତ୍ ଆଉ ଏକ ନୌଯାତ୍ରାରେ ବାହାରି ପଡ଼ିଛନ୍ତି । ତା'ର ଅଳ୍ପ କେତୋଟି ଦିନ ପରେ ଖବର ଆସି ପହଞ୍ଚିଲା ଯେ ନ୍ୟୁସନ୍‌ଙ୍କ ଜାହାଜଟା ମଝି ଦରିଆରେ କେଉଁଠି ବୁଡ଼ିଗଲା, ନାବିକମାନଙ୍କର ପତ୍ତା ମିଳୁନାହିଁ ।

ଖବରଟା ଶୁଣି ସୁସାନଙ୍କ ଅବସ୍ଥା କ'ଣ ହୋଇଥିବ, ତାହା ସହଜରେ ଅନୁମାନ କରିହେଉଥିବ । ସମାଜ ଆଖିରେ ସେ କେଉଁ କୂଳର ନୁହନ୍ତି; ଚାରିଆଡ଼େ ଦାରୁଣ ଦାରିଦ୍ର୍ୟ, ଘରେ ରୂପବତୀ ଯୁବତୀ ଝିଅ ଏଲିଜାବେଥ୍ ଜେନ୍ । ଝିଅ ମୁହଁକୁ ଚାହିଁ ସେ ଗଭୀର ଶୋକସାଗରରେ ବୁଡ଼ିଗଲେ । କ'ଣ କଲେ ଅନ୍ତତଃ ଝିଅର ଭବିଷ୍ୟତଟା ସୁଖଶାନ୍ତିରେ କଟିଯିବ, ସେ ସ୍ଥିର କରିପାରିଲେନାହିଁ । ଶେଷରେ ସେ ଦେଖିଲେ, ଯଦି କୌଣସିମତେ ହେଞ୍ଚାର୍ଡ଼ଙ୍କର ସାକ୍ଷାତ୍ ମିଳନ୍ତା, ତେବେ ସବୁ ସମସ୍ୟାର ସମାଧାନ ହୋଇଯାଆନ୍ତା । ସେ ତାଙ୍କର ସ୍ୱାମୀ; ସ୍ୱାମୀ ନିକଟକୁ ଫେରିଯିବାରେ ତାଙ୍କର ପୂର୍ଣ୍ଣ ଅଧିକାର ରହିଛି । କିନ୍ତୁ ଝିଅ କ'ଣ ସେ ଇତିହାସ ଜାଣେ ? ଯାହାହେଉ, ଝିଅକୁ ଅସଲ କଥା ନକହି ସେ ହେଞ୍ଚାର୍ଡ଼ଙ୍କୁ ଖୋଜିବାକୁ ବାହାରିପଡ଼ିଲେ । ତାଙ୍କର ପୂର୍ଣ୍ଣବିଶ୍ୱାସ ରହିଲା ଯେ ବାପାହିଁ ଝିଅକୁ ଅତୀତ ଜୀବନର କାହାଣୀଟା ଠିକ୍ ଭାବରେ କହିପାରିବେ ।

ଖିରିବାଲୀ ବୁଢ଼ୀଠାରୁ ହେଞ୍ଚାର୍ଡ଼ଙ୍କ ବିଷୟରେ ଯତ୍‌ସାମାନ୍ୟ ସମ୍ବାଦ ସଂଗ୍ରହ କରି ମାଆଝିଅ ଆସି କାଷ୍ଟରବ୍ରିଜ ସହରରେ ପହଞ୍ଚିଗଲେ । ସେପ୍ଟେମ୍ବର ମାସର ଏକ ଶୁକ୍ରବାର ସନ୍ଧ୍ୟା । ମାଆଝିଅ ବଡ଼ଦାଣ୍ଡ ଦେଇ ଯାଉ ଯାଉ ଦେଖିଲେ ଜଣେ ଭଦ୍ରମହିଳା ଖଣ୍ଡେ ବଡ଼ ପାଉଁରୁଟି ଧରି ପାଖଆଖରେ ବୁଲୁଥିବା ଲୋକଙ୍କ ହାତକୁ ଟିକିଏ ଟିକିଏ ରୁଟି ବଢ଼ାଇଦେଇ ଚାଖିବାକୁ କହୁଛନ୍ତି । ଲୋକେ ରୁଟି ଚାଖି ମୁହଁ ଆମ୍ବିଳା କରିଦେଇ ନାନା ସମାଲୋଚନା କରୁଛନ୍ତି । ସେ ରୁଟି ଟିକା ଦେଖି ସୁସାନଙ୍କର ମନେପଡ଼ିଲା ଯେ ରାତିରେ ଖାଇବା ଲାଗି ତାଙ୍କୁ କିଛି ରୁଟି କିଣିବାକୁ ପଡ଼ିବ । ସେ ଯାଇ ଭଦ୍ରମହିଳାଙ୍କୁ ପଚାରିଲେ, ''ମାଉସୀ, ଏ ପାଖରେ ପାଉଁରୁଟି ଦୋକାନ କେଉଁଠି ଅଛି କି ?''

ପାଉଁରୁଟି ଦୋକାନଟା ଦେଖାଇଦେଇ ଭଦ୍ରମହିଳା କହିଲେ, ''ସେଠି ରୁଟି କିଣିବାକୁ ମିଳିବ; କିନ୍ତୁ ସାରା କାଷ୍ଟରବ୍ରିଜଟା ଖୋଜିଗଲେ ବି ଭଲ ରୁଟି ବୋଲି କେଉଁଠି ପାଇବନାହିଁ ।''

ବିସ୍ମିତ ହୋଇ ସୁସାନ ପଚାରିଲେ, ''କାହିଁକି ମ ?''

ସେ ଅବସ୍ଥା ବୁଝାଇଦେଲେ, ''ଗହମ ତ ଖରାପ; ରୁଟି କିପରି ଭଲ ହେବ ? ଆମ ଏଠାର ସବୁତକ ଗହମ ଜଣେ ମୋଟା ବ୍ୟବସାୟୀ ମହଜୁଦ କରିଛନ୍ତି । କ'ଣ ହୋଇଛି କେଜାଣି, ସେସବୁ ଗହମ ଖରାପ ହୋଇଯାଇଛି; ତେଣୁ ସବୁ ରୁଟି ଖରାପ ପଡୁଛି ।''

—ସତେ !

—ତୁମେ ଏଠିକି ନୂଆ ଆସିଛ କି କ'ଣ; ଏଠିକା ହାଲ ଜାଣିନା ?

—ନାହିଁ ମାଉସୀ, ମୁଁ ଜାଣେନା – କହି ସୁସାନ ଝିଅକୁ ନେଇ ରୁଟି ଦୋକାନ ଆଡ଼େ ଚାଲିଲେ । ରୁଟି ଦୋକାନରୁ କିଛି ବିସ୍କୁଟ କିଣି ଯାଉ ଯାଉ ଦେଖିଲେ ଗୋଟିଏ ସ୍ଥାନରେ ସୁନ୍ଦର ବ୍ୟାଣ୍ଡ୍ ବାଜା ବାଜୁଛି । ସେଠାରେ ଗୁଡ଼ାଏ ଲୋକ ଜମା ହୋଇଛନ୍ତି ଦେଖି ଏ ଦୁଇଜଣ ବି ସେଠାକୁ ଯାଇ ଠିଆ ହୋଇଗଲେ ।

## ତିନି

କାଷ୍ଟରବ୍ରିଜର ବିଭିନ୍ନ ହୋଟେଲ ମଧ୍ୟରେ କିଙ୍ଗ୍‌ସ ଆର୍ମସ୍ ହୋଟେଲଟି ହେଲା ପ୍ରଧାନ । ସେହି ବିରାଟ ହୋଟେଲରେ ଖୋଲା ହଲ୍ ଭିତରେ ବାଜି ଉଠୁଥିଲା ମନମତାଣିଆ ବ୍ୟାଣ୍ଡ ବାଜା । ହୋଟେଲ ସାମନାରେ ଦେଖଣାହାରିଙ୍କ ଭିଡ଼ ଦେଖି ସୁସାନ ଝିଅକୁ କହିଲେ, ''ମାଆ ଲୋ, ସହରର ବିଭିନ୍ନ ଆଡ଼ର ଲୋକ ଏଠି ଜମା ହୋଇଛନ୍ତି, ଏଇଠି ପଚାରିଲେ ତାଙ୍କ ଖୋଜଖବର ମିଳିପାରନ୍ତା ।'' ଜେନ୍ ଜଣେ ବୃଦ୍ଧ ଲୋକଙ୍କୁ ଲୋକଗହଳିର କାରଣ ପଚାରିଲା । ସେ କହିଲେ – ''ତୁ ଜାଣିନାହୁଁ କି ଝିଅ, ଆଜି ପରା ସହରର ସବୁ ବଡ଼ ବଡ଼ ଲୋକ ମିଶି ଏଠି ଗୋଟାଏ ଭୋଜି କରୁଛନ୍ତି; ମେୟର ଆସିଛନ୍ତି, ଦେଖିପାରୁନୁ । ମେୟର ଶ୍ରୀଯୁକ୍ତ ହେଞ୍ଚାର୍ଡ଼ ପରା ଟେବୁଲ ଆରପାଖରେ ବସିଛନ୍ତି ।''

''ହେଞ୍ଚାର୍ଡ଼ !'' – ବିସ୍ମିତ ହୋଇଗଲା ଏଲିଜାବେଥ୍ ଜେନ୍ । ଶ୍ରୀଯୁକ୍ତ ହେଞ୍ଚାର୍ଡ଼ଙ୍କୁ ଦେଖିବା ଲାଗି ସେ ଉପର ପାହାଚକୁ ଉଠିଗଲା । ସୁସାନ ବି ବୁଢ଼ା କଥା ଶୁଣୁ ଶୁଣୁ ଝିଅ ପଛେ ପଛେ ହୋଟେଲର ଉପର ପାହାଚକୁ ଉଠି ଖୋଲା ଝରକା ଦେଇ ଭିତରର ଭୋଜିସଭାକୁ ଚାହିଁବାକୁ ଲାଗିଲେ ।

ସଭାପତିଙ୍କ ଆସନରେ ପ୍ରାୟ ଚାଳିଶ ବର୍ଷର ଜଣେ ସୁସ୍ଥସବଳ ଭଦ୍ରଲୋକ ବସିଥାନ୍ତି । ଆନନ୍ଦ ଆଗ୍ରହରେ ଭଦ୍ରଲୋକଙ୍କୁ କିଛି ସମୟ ଚାହିଁବା ପରେ

ଏଲିଜାବେଥ୍ ଲକ୍ଷ୍ୟ କଲା, ଅନ୍ୟ ସମସ୍ତଙ୍କୁ ମଦ୍ୟ ପରଷୋଯାଉଛି; କିନ୍ତୁ ମେୟର ହେଞ୍ଚାର୍ଡ଼ଙ୍କୁ କାହିଁକି ପରଷାଯାଉନାହିଁ । ଉଦ୍ଦେଶ୍ୟ ବୁଝିନପାରି ସେ ବୁଢ଼ାକୁ ପଚାରିଲା, ''ମଉସା, ମେୟରଙ୍କୁ କ'ଣ କେହି ମଦ ଯାଚୁନାହିଁ ?''

ବୁଢ଼ା କହିଲା, ''ଆଲୋ ମା' ସେ ପରା ନିଶାପାଣି ମୋଟେ ଛୁଅନ୍ତି ନାହିଁ । ଶୁଣିଛି, ସେ କାଳେ ଅନେକ ବର୍ଷ ତଳେ ଧର୍ମକୁ ସାକ୍ଷୀ ରଖି ଗୋଟାଏ ଶପଥ କରିଛନ୍ତି ଯେ ନିଶାପାଣି ଛୁଇଁବେନାହିଁ – ଆହୁରି ଦି' ବରଷ ଯାଏ ମଦ ଖାଇବେନାହିଁ । ଭାରି ଟାଣୁଆ ଲୋକ ବି; ନହେଲେ କି ଦୋହଡ଼ ବାହା ନ ହୋଇ ଏତେ ଦିନ ହେଲା ରହିପାରନ୍ତେ ?''

—ଏମିତି କେବଠୁଁ ରହିଲେଣି ? ଏଲିଜାବେଥ୍ ପଚାରିଲା ।

''ମୁଁ ଜାଣେନି ଲୋ ମା; ତେବେ ଆମ କାଷ୍ଟରବ୍ରିଜ୍‌କୁ ଆସିବା ବେଳକୁ ତାଙ୍କର ଭାର୍ଯ୍ୟା ନଥିଲେ... ଭାରି ଦୁଃଖକଷ୍ଟରେ ବଡ଼ଲୋକ ହୋଇଛନ୍ତି । ଏଠିକି ଆସିବାବେଳକୁ ତାଙ୍କର କିଛି ବୋଲି କିଛି ନଥିଲା; ପ୍ରଥମେ ପରା କ୍ଷେତ-ମଜୁରିଆ କାମ କରୁଥିଲେ । ଅବିକା ସେ ଆମ ସହରର ସବୁଠାରୁ ବଡ଼ଲୋକ, ସହରର ମେୟର । ହେଲେ କ'ଣ ହେବ, ଗତ ସାଲଠାରୁ ଟିକିଏ ବଦନାମ୍ ହେଇଯାଇଛି । କେମିତି ଗହମ ମହଜୁଦ୍ କରିଛନ୍ତି କେଜାଣି ଯେତେ ଗହମ ଯୋଗାଉଛନ୍ତି ସବୁ ଖରାପ; ମଣିଷ କେବେ ଏମିତି ଖରାପ ରୁଟି ଖାଇନଥିଲା ।''

ବାହାରେ ଏସବୁ କଥୋପକଥନ ଚାଲିଥିବାବେଳେ ଭିତରେ ତେଣେ ଖିଆପିଆ ଶେଷ ହୋଇଗଲା । ତା'ପରେ ବକ୍ତୃତା ଦେବାର ପାଳି । ଶୁଣାଗଲା, ହେଞ୍ଚାର୍ଡ଼ ତାଙ୍କର ଗହମ ଖରିଦି ଅନୁଭୂତି ନେଇ ଗୋଟାଏ ଘଟଣା ବର୍ଣ୍ଣନା କରି ଜଣେ ଠକ ବ୍ୟବସାୟୀକୁ କିପରି ପରାଭୂତ କରିଥିଲେ, ତାହା କହୁଛନ୍ତି । ତାଙ୍କର ସେ ବର୍ଣ୍ଣନା ଶୁଣି ଉପସ୍ଥିତ ଭଦ୍ରମଣ୍ଡଳୀ କରତାଳି ଦେବାକୁ ଲାଗିଲେ । କିନ୍ତୁ ହଠାତ୍ ଜଣେ ବିରୋଧୀଦଳର ଲୋକ ପଚାରିଲେ, ''ଏସବୁ ଗପ ତ ଶୁଣାଇଲେ; କିନ୍ତୁ ଆପଣଙ୍କ ଗହମ କାହିଁକି ଖରାପ ପଡ଼ିଲା ଯେ ଲୋକେ ଭଲ ରୁଟିଖଣ୍ଡେ ବି ଖାଇବାକୁ ପାଉନାହାନ୍ତି ?''

ହେଞ୍ଚାର୍ଡ଼ଙ୍କ ମୁହଁଟା କ୍ରୋଧରେ ଲାଲ ପଡ଼ିଗଲା । ଏହିଭଳି କ୍ରୋଧପରବଶ ହୋଇ କୋଡ଼ିଏ ବର୍ଷ ତଳେ ଦିନେ ସେ ନିଜ ଭାର୍ଯ୍ୟାକୁ ହରାଇ ବସିଥିଲେ । ରାଗରରଗର ହୋଇ ସେ କହିଲେ, ''ବଡ଼ ବ୍ୟବସାୟରେ ଏମିତିକା ଭୁଲଭଟକା ହୋଇଯାଏ; ଦୈବୀଦୁର୍ଘଟଣା ଉପରେ ମଣିଷର କି ହାତ ଅଛି କହିଲେ ? ଆପଣ

ବୋଧହୁଏ ଭୁଲିଯାଇଛନ୍ତି ଯେ ଚଳିତ ବର୍ଷ ଗହମ ଅମଳବେଳେ ବର୍ଷା ଲାଗିରହିଥିଲା । ସେ ପାଗରେ ଗହମ ଆଉ ଭଲ ରହନ୍ତା କିପରି ? ସେ ଯାହାହେଉ, ଆଉ ଖରାପ ଗହମ ଯେପରି ଯୋଗାନଯାଏ, ମୁଁ ତା'ର ବ୍ୟବସ୍ଥା କରୁଛି ।''

ପ୍ରଶ୍ନକର୍ତ୍ତା ପୁଣି ପଚାରିଉଠିଲେ, ''କିନ୍ତୁ ଏ ଯେଉଁ ଗହମ ଯୋଗାଇଦେଇଛନ୍ତି, ସେଥିପାଇଁ କି ବ୍ୟବସ୍ଥା କରୁଛନ୍ତି ଶୁଣେ ? ଆପଣ କ'ଣ ଭଲ ଗହମ ଦେଇ ଖରାପ ଅଟାଗୁଡ଼ାକ ଫେରାଇନେବେ ?''

ହେଞ୍ଚାର୍ଡ଼ଙ୍କ ମୁହଁଟା ଆହୁରି ଲାଲ ହୋଇଗଲା । ମନର ରାଗକୁ ଶାନ୍ତ କରିବାଲାଗି କି କ'ଣ, ସେ ଅଧଗ୍ଲାସେ ପାଣି ପିଇଦେଇ କହିଲେ, ''ଯଦି ଖରାପ ଗହମକୁ କିପରି ଭଲ କରାଯାଇପାରେ ସେ ଉପାୟ କେହି ବତାଇଦେବେ, ତେବେ ମୁଁ ସେସବୁ ଫେରାଇନେବାକୁ ପ୍ରସ୍ତୁତ; କିନ୍ତୁ ମୁଁ ଜାଣେ, ତା' ଆଉ ହୋଇପାରିବନାହିଁ ।''

ଭିତରେ ଏସବୁ ବାଦାନୁବାଦ ଚାଲିଥିବାବେଳେ, ବାହାରେ ଏଣେ ଦେଖଣାହାରୀଙ୍କ ମଧ୍ୟରେ ଆଉ ଜଣେ ନୂଆ ଲୋକ ଠିଆ ହୋଇଥିବାର ଦେଖାଗଲା । ଯୁବକ ବୟସ, ସୁନ୍ଦର ଚେହେରା, ସେ ବୋଧହୁଏ ଏ ହୋଟେଲ ପାଖରେ ଅଟକି ନଥାନ୍ତେ; କିନ୍ତୁ ଗହମ ଓ ରୁଟି ବିଷୟରେ ଆଲୋଚନା ଚାଲିଥିବା କଥା ଶୁଣି ସେ ଟିକିଏ ଆଗ୍ରହାନ୍ୱିତ ହୋଇ ଝରକା ପାଖକୁ ଉଠିଯାଇଥିଲେ । ହେଞ୍ଚାର୍ଡ଼ଙ୍କର ଶେଷ କେଇପଦ କଥା ଶୁଣି ଯୁବକ ମନେ ମନେ ହସିଉଠିଲେ । ଏଲିଜାବେଥ୍ ଜେନ୍ ଦେଖିଲା, ଯୁବକ ନିଜ ପକେଟ ଖାତା ବାହାର କରି ଗୋଟିଏ ପୃଷ୍ଠାରେ କ'ଣ ସବୁ ଲେଖିବା ପରେ ପୃଷ୍ଠାଟି ଚିରି ଚଉତିଦେଲେ ଓ ତା' ଉପରେ ଠିକଣା ଲେଖିଦେଇ ଖାନ୍‌ସାମା ହାତରେ ମେୟରଙ୍କ ପାଖକୁ ପଠାଇଦେଲେ । ଖାନ୍‌ସାମା ଚିଠିଟି ନେବା ପରେ ସେ ପୁଣି ତାକୁ ପଚାରିଲେ, ''ଆଚ୍ଛା, ତୁମ ହୋଟେଲଠାରୁ ଟିକିଏ ଶସ୍ତା ପଡ଼ିବା ଭଳି ଭଲ ହୋଟେଲ ଏ ପାଖରେ କେଉଁଠି ଅଛି କହିପାରିବ କି ?''

ଖାନ୍‌ସାମା ଟିକିଏ ଚିନ୍ତାକରି କହିଲା, ''ବାବୁ, ଯଦି ଶସ୍ତା ସୁନ୍ଦର ଖୋଜୁଛ, ତେବେ ଥ୍ରି ମାରିନର୍ସ ହୋଟେଲକୁ ଯାଅ ।''

ଯୁବକଜଣକ ଧନ୍ୟବାଦ ଜଣାଇ ଥ୍ରି ମାରିନର୍ସ ହୋଟେଲ ଆଡ଼େ ଚାଲିଗଲେ । ଏଲିଜାବେଥ୍ ଜେନ୍ ଦେଖିଲା, ଖାନ୍‌ସାମା ସେହି ଚିଠିଟି ନେଇ

ମେୟର ହେଞ୍ଚାର୍ଡ୍‌ଙ୍କୁ ଦେଇଦେଲା । ଚିଠିଟା ପଢୁ ପଢୁ ହେଞ୍ଚାର୍ଡ୍‌ଙ୍କ ମୁହଁର ଭାବ ବଦଳିଗଲା । ସେ ଚିଠି ଉପରେ ଆଉ ଥରେ ଆଖିବୁଲାଇଆଣି କିଛି ସମୟ ଚୁପ୍ ହୋଇ ଠିଆହୋଇ ଗଲେ । ମନେହେଲା, ସେ ଯେପରି ଗୋଟାଏ କିଛି ନୂତନ ଜ୍ଞାନ ପାଇଗଲେ ।

ଏଣେ ରାତି ଡେରି ହୋଇଚାଲିଥାଏ । ହୋଟେଲ ଘଣ୍ଟାରେ ନଅଟା ବାଜିଲା ଦେଖି ଏଲିଜାବେଥ୍ ଜେନ୍ ମାଆଙ୍କୁ କହିଲା, ''ମାଆ, ରାତି ଆସି ନଅଟା ହୋଇଗଲା; କେଉଁଠି ରହିବା ?''

ସୁସାନ ଏକ ଗଭୀର ଚିନ୍ତାରେ ବୁଡ଼ିଯାଇଥାନ୍ତି । ତାଙ୍କ ମୁହଁରୁ ଉତ୍ତର ବାହାରୁନାହିଁ ଦେଖି ଏଲିଜାବେଥ୍ କହିଲା, ''ଏ ପାଖରେ ଥ୍ରି ମାରିନର୍ସ ବୋଲି ଗୋଟାଏ ଶସ୍ତା ସୁନ୍ଦର ହୋଟେଲ ଅଛି, ସେଠିକି ଯିବାକି ?'' ସୁସାନ ହଁ ଭରିଲେ । କିଛି ସମୟ ମଧ୍ୟରେ ମାଆ ଝିଅ ଯାଇ ଥ୍ରି ମାରିନର୍ସ ହୋଟେଲରେ ପହଞ୍ଚିଗଲେ । ଏଣେ କିଙ୍ଗ୍‌ସ ଆର୍ମସ୍ ହୋଟେଲର ଭୋଜିସଭା ବି ଶେଷ ହୋଇଗଲା । ମେୟର ହେଞ୍ଚାର୍ଡ୍ ଚିନ୍ତାକୁଳ ହୋଇ କିଛି ସମୟ ଠିଆହେବା ପରେ ଖାନ୍‌ସାମାଟିକୁ ପଚାରିଲେ, ''କିରେ, ଏ ଚିଠି କିଏ ସେ ଦେଲା ?''

ଖାନ୍‌ସାମାଟି କହିଲା, ''ହଜୁର, ମୁଁ ତ ତାଙ୍କ ନାଆଁ ଜାଣେନି; ତେବେ ସେ ଆମ ଏଠିକି ନୂଆ ହେବେ । କଥାଭାଷାରୁ ଜଣାପଡୁଥିଲା ସେ ସ୍କଟ୍‌ଲାଣ୍ଡର ଲୋକ ହେବେ ।''

—କ'ଣ ଏହି ହୋଟେଲରେ ରହୁଛନ୍ତି ?

—ନାହିଁ ହଜୁର, ସେ ବୋଧହୁଏ ଥ୍ରି ମାରିନର୍ସ ଆଡ଼େ ଗଲେ କି କ'ଣ ।

ମେୟର ସଙ୍ଗେ ସଙ୍ଗେ କୋଟ୍ ଓ ଟୋପି ପିନ୍ଧିପକାଇ ଥ୍ରି ମାରିନର୍ସ ହୋଟେଲ ପଥରେ ବାହାରିପଡ଼ିଲେ ।

## ଚାରି

ଥ୍ରି ମାରିନର୍ସ ହୋଟେଲ ଫାଟକ ପାଖରେ ପହଞ୍ଚୁ ପହଞ୍ଚୁ ମାଆ ଝିଅ ଦିହେଁ ପ୍ରଥମେ ଚିନ୍ତାରେ ପଡ଼ିଗଲେ — ଅନ୍ତତଃ ଏ ହୋଟେଲର ଖର୍ଚ୍ଚ ବହନ କରି ହେବ ତ ? କିଛି ସମୟ ଚିନ୍ତା କରିବା ପରେ ଦିହେଁ ଯାଇ ହୋଟେଲରେ ବଖୁରିଏ ଛୋଟ ଘର ଭଡ଼ା ନେଇ ରହିଗଲେ । ତଥାପି ବଖରା ଭିତରେ ଆଖି

ବୁଲାଇ ନେଇ ସୁସାନ କହିଲେ, ''ଦେଖୁଛି, ଏ ବଖରାଟା ବି ଆମକୁ ବଡ଼ ହୋଇଯିବ ।''

ମାଆଙ୍କୁ ଆଶ୍ୱାସନା ଦେଇ ଏଲିଜାବେଥ୍ ଜେନ୍ କହିଲା, ''ତୁମେ ବ୍ୟସ୍ତ ହୁଅନି ମାଆ, ମୁଁ ସେକଥା ବୁଝିବି ।'' ମାଆ ଟିକିଏ ଆରାମରେ ବସିବା ପରେ ପରେ ସେ ସିଧା ପାହାଚ ଓହ୍ଲାଇ ଚାଲିଗଲା ହୋଟେଲର ମାଲିକିଆଣୀଙ୍କ ପାଖକୁ । ମାଲିକିଆଣୀ କାମରେ ବ୍ୟସ୍ତ ଅଛନ୍ତି ଦେଖି ଏଲିଜାବେଥ୍ କହିଲା, ''ମାଉସୀ, ଆପଣ ତ ଖୁବ୍ ବ୍ୟସ୍ତ ଅଛନ୍ତି; ଆମେ ସେ ଉପରର ଛୋଟ ବଖରାଟାରେ ଉଠିଛୁ ଯେ... ।''

ମାଲିକିଆଣୀ କହିଲେ, ''ଭଲ, ଭଲ କରିଛ ଝିଅ; ଦେଖୁଛ ତ ମୁଁ କାମରେ ବ୍ୟସ୍ତ, ତୁମର କିଛି ଅସୁବିଧା ହେଲେ ମତେ କହିବ, ଏଁ !''

''ମୁଁ କ'ଣ କହୁଥିଲି କି, ମାଆଙ୍କ ପାଖରେ ପଇସାପତ୍ର ଟିକିଏ ଅଭାବ । ଆପଣ ଯଦି କହନ୍ତେ, ତେବେ ଆପଣଙ୍କ କାମଦାମରେ ସାହାଯ୍ୟ କରନ୍ତି, ଭଡ଼ା ବାବଦକୁ କିଛିଟା ମଜୁରା ହୋଇଯାଆନ୍ତା । ... କ'ଣ କହୁଛନ୍ତି ?''

ପ୍ରସ୍ତାବଟା ମାଲିକିଆଣୀ ମନକୁ ଖୁବ୍ ପାଇଲା; କେତେକ ହୋଟେଲରେ ଏଭଳି ବ୍ୟବସ୍ଥା ବି ରହିଥାଏ । ତେଣୁ ସେ ଗୋଟାଏ ସାମୟିକ ନିଯୁକ୍ତି ଦେଇ କ'ଣ କ'ଣ କରିବାକୁ ହେବ ଏଲିଜାବେଥ୍‌କୁ ତାହା ବତାଇଦେଲେ । ଏଲିଜାବେଥ୍ ସଙ୍ଗେ ସଙ୍ଗେ କାମରେ ଲାଗିଗଲା । ସେ ତା' କାମ କରିଚାଲିଛି, ଏ ସମୟରେ ଉପର ମହଲାର ଗୋଟାଏ କୋଠରିର ଘଣ୍ଟି ବାଜିଉଠିଲା । ହୋଟେଲ ମାଲିକିଆଣୀ ବ୍ୟସ୍ତ ହୋଇ ତାକୁ କହିଲେ, ''ଏ କୋଠରିର ଠିକ୍ ଉପର କୋଠରିଟାରେ ଜଣେ ସ୍କଟିସ୍ ଭଦ୍ରଲୋକ ଉଠିଛନ୍ତି; ସେ ବୋଧହୁଏ ଖାଇବାକୁ ତରତର ହୋଇ ଘଣ୍ଟି ବଜାଇଲେଣି । ତାଙ୍କ ଖାନା ତିଆରି ହୋଇଗଲା କି ନା, ଦେଖିଲ । ଯଦି ତିଆରି ହୋଇଯାଇଥାଏ, ତେବେ ଖାନାଟା ତାଙ୍କ କୋଠରିକୁ ନେଇ ଦେବ ।''

ଏଲିଜାବେଥ୍ ଜେନ୍ ରୋଷଘରକୁ ଯାଇ ଦେଖିଲା ଯେ ଖାନା ପ୍ରସ୍ତୁତ ହୋଇ ରହିଛି । ତେଣୁ ଗୋଟିଏ ଟ୍ରେ'ରେ ଖାନା ସଜାଇ ଦେ ଉପର ମହଲାକୁ ନେଇଗଲା । ଉପର ମହଲାରେ ଯାଇ ଦେଖେ ତ, ଭଦ୍ରଲୋକଙ୍କର କୋଠରିଟି ଠିକ୍ ତାଙ୍କ କୋଠରିକୁ ଲାଗି ରହିଛି । କୋଠରି ଭିତରେ ଦେଖାଗଲା, ଭଦ୍ରଲୋକ ଅନ୍ୟ ଦିଗକୁ ମୁହଁକରି କ'ଣ ପଢ଼ିବାରେ ମଜ୍ଜିଯାଇଛନ୍ତି । ଖାନା ଟ୍ରେ'ଟି ଧରି

ଏଲିଜାବେଥ୍ କବାଟ ଆଢୁଆଳରୁ ଭଲକରି ଚାହିଁ ଦେଖିଲା । ଏଁ... ! ଏ ତ ସେହି ଯୁବକ !! ଯାଙ୍କୁ ହିଁ ସେ କିଙ୍ଗ୍‌ସ ଆର୍ମସ୍ ହୋଟେଲ ଦୁଆରେ ଦେଖିଥିଲା । କି ସୁନ୍ଦର ରୂପ ସତେ ! ମୁଣ୍ଡରେ କୁଞ୍ଚିତ ଘନ କେଶ, ମୋଟା ମୋଟା ଭ୍ରୂଲତା, ଫୁଲର ପାଖୁଡ଼ା ପରି ସୁନ୍ଦର ଆଖି, ସବଳ ସୁସ୍ଥ ଶରୀର । ବିମୁଗ୍ଧା ହୋଇ ଚାହୁଁ ଚାହୁଁ ଗୋଟାଏ ଅଜଣା ଆବେଗରେ ଏଲିଜାବେଥ୍‌ର ହୃଦୟ ନାଚିଉଠିଲା । ସେ ଧୀରେ ଧୀରେ ଯାଇ ଟେବୁଲ ଉପରେ ଖାନା ଟ୍ରେ'ଟି ଥୋଇଦେଇ ଫେରି ଆସୁ ଆସୁ ଆଉ ଥରେ ଯୁବକଙ୍କ ରୂପଲାବଣ୍ୟ ଦେଖିଦେବା ବେଳକୁ ଯୁବକଙ୍କର ଧ୍ୟାନ ଭାଙ୍ଗିଗଲା । ସେ ବି ଏଲିଜାବେଥ୍‌କୁ ଚାହିଁଦେଲେ । ଚାରିଆଖି ଯେପରି ଏକ ହୋଇଗଲା । ଦୁହିଁଙ୍କ ମୁହଁରେ ଫୁଟିଉଠିଲା ଏକ ମୃଦୁମଧୁର ହସ । ଏଲିଜାବେଥ୍ ଚଞ୍ଚଳ ମୁଣ୍ଡ ପୋତିଦେଇ ଚାଲିଆସିଲା ସତ; କିନ୍ତୁ ସେ ମଧୁର ହସର ମାଦକତାରେ ତା'ର ହାତ-ପାଦ ଥରିଉଠିଲା । ମୁହଁରୁ ବାହାରିଆସିଲା ପଦେଅଧେ ସଙ୍ଗତିହୀନ ଗୀତ । ରୋଷଘରୁ ନିଜପାଇଁ ଓ ମାଆଙ୍କପାଇଁ ଖାନା ନେଇ ସେ ସେହି ଗୀତପଦକ ଗାଇ ଗାଇ ମାଆଙ୍କ ପାଖକୁ ଚାଲିଆସିଲା ।

କୋଠରିକୁ ଆସି ଦେଖେ ତ, ମାଆ ଖଟିଆରେ ପଡ଼ି ଆରାମ ନକରୁଣୁ ଝରକା ପାଖ ଚଉକିରେ ବସି ବିସ୍ମୟ-ବିମୁଗ୍ଧ ହୋଇ କ'ଣ ଗୋଟାଏ କାନେଇ ଶୁଣୁଛନ୍ତି । ଝିଅକୁ ଦେଖି ସେ ପାଟିଉପରେ ଆଙ୍ଗୁଠି ରଖି ନୀରବ ରହିବାକୁ ନିର୍ଦ୍ଦେଶ ଦେଲେ । ଏଲିଜାବେଥ୍ ଦେଖିଲା ତାଙ୍କ କୋଠରି ସହିତ ସ୍କଟିସ୍ ଯୁବକଙ୍କ କୋଠରିକୁ ସଂଯୋଗ କରି ଗୋଟିଏ ଖୋଲା ଦୁଆର ରହିଛି । ଗୋଟିଏ କନା ପରଦା ଟଣାଯାଇ ଯୁବକଙ୍କ ପୋଷାକ-ପରିଚ୍ଛଦ ପିନ୍ଧିବା ଲାଗି ଏପଟ କୋଠରିର ଗୋଟାଏ ଅଂଶ ପୃଥକ୍ କରିଦିଆଯାଇଛି । ଦୁଆରଟି ଖୋଲାଥିବା ଫଳରେ ଗୋଟିଏ କୋଠରିର କଥାଭାଷା ଯେ ଆର କୋଠରିକୁ ଶୁଣାଯିବ, ଏଥିରେ ସନ୍ଦେହନାହିଁ । ଏଲିଜାବେଥ୍ ଚକିତ ହୋଇ ଟେବୁଲ୍ ଉପରେ ଖାନା ଟ୍ରେ'ଟି ଥୋଇଦେଲା; ଚାହିଁରହିଲା ମାଆଙ୍କ ମୁହଁକୁ ।

ସୁସାନ ଆସ୍ତେ କରି ଶୁଣାଇଦେଲେ, ''ସିଏ ଆସିଛନ୍ତି— ମେୟର !'' ଏଲିଜାବେଥ୍ କାନେଇ ଶୁଣିଲା । ସତରେ ଆର କୋଠରିରେ ଦୁଇଜଣ ଲୋକ କଥା ହେଉଛନ୍ତି । ସେ ରୋଷଘରେ ଥିବାବେଳେହିଁ ହେଞ୍ଚାର୍ଡ଼ ହୋଟେଲ ମାଲିକଙ୍କୁ ସାଙ୍ଗରେନେଇ ସ୍କଟିସ୍ ଯୁବକଙ୍କ ପାଖକୁ ଚାଲିଆସିଛନ୍ତି । ଶୁଣାଗଲା, ହେଞ୍ଚାର୍ଡ଼ କହିଲେ, ''ଗୋଟାଏ ବିଷୟ ଜାଣିବାଲାଗି ମୁଁ ବିଶେଷ ବ୍ୟାକୁଳ ହୋଇ ଆପଣଙ୍କ

ପାଖକୁ ଦୌଡ଼ିଆସିଛି । ତେବେ ପ୍ରଥମେ କହନ୍ତୁ ତ, ଆପଣହିଁ ଡୋନାଲ୍‌ଡ ଫର୍‌ଫ୍ରେ ନା ?''

''ଆଜ୍ଞା, ମୁଁ ହିଁ ଡୋନାଲ୍‌ଡ ଫର୍‌ଫ୍ରେ ।''

ଆପଣଙ୍କର ସେ ଛୋଟ ଚିଠିଟିଲାଗି ବିଶେଷ ଧନ୍ୟବାଦ ; ସତ କହୁଛି, ମୋ ଆଗରେ ଏଇଟା ଗୋଟାଏ ବଡ଼ ସମସ୍ୟା ହୋଇ ଠିଆହୋଇଛି । ଲୋକଙ୍କ ଅଭିଯୋଗ ନଶୁଣିବା ପର୍ଯ୍ୟନ୍ତ ମୋର ଧାରଣା ନଥିଲା ଯେ ମୋ ଗହମଗୁଡ଼ାକ ଏତେ ଖରାପ । ଅବସ୍ଥା ବର୍ତ୍ତମାନ ସାଂଘାତିକ; ମୋ ଗୋଦାମରେ ସେହି କିସମର ଶହ ଶହ ବସ୍ତା ଗହମ ମହଜୁଦ ହୋଇ ରହିଛି । ଆପଣ ଯଦି ସତରେ ଗହମଗୁଡ଼ାକୁ ସଜାଡ଼ିଦେବାର କିଛି ଉପାୟ ଜାଣନ୍ତି, ତେବେ ମୁଁ ଆନନ୍ଦରେ ଆପଣଙ୍କର ଉପଦେଶ ଗ୍ରହଣ କରିବି ।'' ଏତିକି କହିଦେଇ ମେୟର ହେଞ୍ଚାର୍ଡ଼ ଆଶାୟିତ ନୟନରେ ଫର୍‌ଫ୍ରେଙ୍କ ମୁହଁକୁ ଚାହିଁରହିଲେ । ଦୁଇ ଚାରି ମିନିଟ୍ ଚିନ୍ତା କରିବା ପରେ ଫର୍‌ଫ୍ରେ କହିଲେ, ''ଠିକ୍ ଅଛି, ଟିକିଏ ଅପେକ୍ଷା କରନ୍ତୁ; ମୋ ବ୍ୟାଗ୍‌ରେ ଗୋଟିଏ ନମୁନା ଅଛି, ସେଇଥିରୁହିଁ ମୁଁ ଆପଣଙ୍କୁ ଉପାୟଟା ଶିଖାଇଦେଇପାରିବି ।''

ଏଲିଜାବେଥ୍ ଜେନ୍ ଓ ତା' ମାଆ ସ୍ପଷ୍ଟ ଦେଖିପାରିଲେ, ଯୁବକ ଯାଇ ତାଙ୍କ ବ୍ୟାଗ୍ ଖୋଲି ସେଥିରୁ ଗୋଟିଏ କ'ଣ ପୁଡ଼ିଆ ବାହାର କରି ଆଣିଲେ । ହେଞ୍ଚାର୍ଡ଼ଙ୍କ ପାଖକୁ ଆସି ପୁଡ଼ିଆ ଖୋଲୁ ଖୋଲୁ ସେ କହିଲେ, ''ଦେଖନ୍ତୁ, ଏହି ମୁଠାକ ଗହମରୁ ଆପଣ ସ୍ପଷ୍ଟ ବାରିପାରିବେ, ଏଥିରୁ କିପରି ଗୋଟାଏ ଗନ୍ଧ ବାହାରୁଛି... ନା ?''

ହେଞ୍ଚାର୍ଡ଼ କହିଲେ, ''ହଁ ତ, ଗନ୍ଧଟା ରୁଚିକର ନୁହେଁ । ମୋ ଗହମଗୁଡ଼ାକ ବି ଅବିକଳ ଏମିତି ଗନ୍ଧଉଛି ।''

''କିଛି ବ୍ୟସ୍ତ ହେବା ଦରକାରନାହିଁ । ବର୍ତ୍ତମାନ ଦେଖନ୍ତୁ ମୁଁ କ'ଣ କରୁଛି''— କହି ଫର୍‌ଫ୍ରେ ଗହମମୁଠାକ ନେଇ କ'ଣ କଲେ, ଏ ଘରକୁ ଦେଖାଗଲାନାହିଁ । କିଛି ସମୟ ପରେ ସେ ହେଞ୍ଚାର୍ଡ଼ଙ୍କୁ କହିଲେ, ''ଏଥର ଦେଖନ୍ତୁ ଆଜ୍ଞା ; ଦି'ଟା ଦାନା ପାଟିରେ ପକାଇ ଚୋବାନ୍ତୁ ।... ବେଶ୍, କ'ଣ କିଛି ଖରାପ ଲାଗୁଛି ?''

ସନ୍ତୁଷ୍ଟ ହୋଇ ହେଞ୍ଚାର୍ଡ଼ କହିଲେ, ''ଚମତ୍କାର ! କାହିଁ କିଛି ଖରାପ ତ ଲାଗୁନାହିଁ, ଏ ବେଶ୍ ଚଳିବ ।''

''ସୁନ୍ଦର ଚଳିବ, ଆଜ୍ଞା । ଆଉ ଟିକିଏ ପରିଶ୍ରମ କରିଦେଲେ କେହି ସନ୍ଦେହହିଁ କରିପାରିବେନାହିଁ । ଟିକିଏ ଖର୍ଚ୍ଚ ପଡ଼ିଯିବ; କିନ୍ତୁ ମାଲଟା ସୁନ୍ଦର କଟିଯିବ । ମୋର ଆଉ କହିବାର କିଛି ନାହିଁ; ଏ ଉପାୟଟାକୁ ଗୋପନ ରଖି ମୋର ମଧ ଲାଭନାହିଁ । ଆପଣ ଯଦି ମୋ ଆବିଷ୍କାରର ସଦୁପଯୋଗ କରିପାରିବେ, ମୁଁ ବରଂ ଆନନ୍ଦିତ ହେବି । ମୁଁ ତ ଆଉ ଇଂଲଣ୍ଡରେ ରହୁନାହିଁ– ଅଳ୍ପଦିନ ମଧରେ ମୁଁ ଆମେରିକା ଚାଲିଯାଉଛି ।''

ବିସ୍ମିତ ହୋଇ ମେୟର ପଚାରିଲେ, 'ଆମେରିକା ?'

—ହଁ ।

—ଆପଣ ଏଇଠି ମୋ ବ୍ୟବସାୟରେ ମ୍ୟାନେଜର ହୋଇ ରହିଗଲେ କିପରି ହୁଅନ୍ତା ?

ଯୁବକ ନମ୍ର କଣ୍ଠରେ କହିଲେ, ''ଆପଣଙ୍କର ସୁଦୟାଲାଗି ଧନ୍ୟବାଦ; ମୁଁ ରହିପାରିବିନାହିଁ । ବାହାର ଦୁନିଆର କିଛି ଅଂଶ ଦେଖିବାଲାଗି ମନଟା ଆତୁର ହେଉଛି ।''

''ଏଥିପାଇଁ ଏତେ ବ୍ୟସ୍ତ କାହିଁକି, ବନ୍ଧୁ ? ଏଇଠି ରହିଯାଆନ୍ତୁ ନା ! ମୋ ବ୍ୟବସାୟରେ ଆପଣଙ୍କ ପରି ଦକ୍ଷ ଲୋକର ସହାୟତା ମିଳିଲେ, ମୁଁ ଭାବୁଛି, ଦେଶ ଓ ଦଶର ଉପକାର ହେବା ସଙ୍ଗେ ସଙ୍ଗେ ଆପଣଙ୍କର ବି କୌଣସି ଅଭାବ ରହିବନାହିଁ । ରହିଯାଆନ୍ତୁ ।'' ଫର୍‌ଫ୍ରେଙ୍କ ମୌନତା ଲକ୍ଷ୍ୟ କରି ହେଞ୍ଚାର୍ଡ଼ ପୁଣି କହିଲେ, ''ମତେ ତ ଜଣେ ମ୍ୟାନେଜର ରଖିବାକୁ ପଡ଼ିବ । ଖୋଜିଲେ ଲୋକ ବି ମିଳିଯିବେ; କିନ୍ତୁ ସତ କହୁଛି, ମୁଁ କାହିଁକି ଆପଣଙ୍କୁ ବିଶେଷ ପସନ୍ଦ କରୁଛି । ସତରେ, ଆପଣଙ୍କୁ ପାଇଲେ ମୁଁ ଖୁସିହୁଅନ୍ତି ।''

ଫର୍‌ଫ୍ରେ ଏ ପ୍ରସ୍ତାବ, ପ୍ରତ୍ୟାଖ୍ୟାନ କରିପାରିଲେନାହିଁ । ସେ ଭଙ୍ଗା ଭଙ୍ଗା କଣ୍ଠରେ କହିଲେ, ''ମୁଁ ଆଜ୍ଞା, ମୋଟେ ଏ ପ୍ରତ୍ୟାଶା କରିନଥିଲି । ହଉ, ମୁଁ ତାହାହେଲେ ମୋର ଆମେରିକା ଯିବା ପ୍ରସ୍ତାବ ବନ୍ଦ ରଖିବି ।''

ବିଦାୟ ନେବା ପୂର୍ବରୁ କରମର୍ଦ୍ଦନ କରି ହେଞ୍ଚାର୍ଡ଼ କହିଲେ, ''ଅଶେଷ ଧନ୍ୟବାଦ ବନ୍ଧୁ ! ଆଜି ତ ରାତି ଅନେକ ହେଲାଣି, କାଲି ସକାଳୁ ଆପଣ ମୋ ଘରକୁ ଚାଲିଆସିବେ; ସେଇଠି ସବୁ ବିଷୟ ପକ୍‌କା କରିଦେବା ।''

ତା' ପରଦିନ ସକାଳ କଥା । ସୁସାନ ଜଳଖିଆ ଖାଉ ଖାଉ ଝିଅକୁ କହିଲେ, ''କାଲି ରାତିରେ ସ୍କଚିସ୍ ଯୁବକଙ୍କ ସହିତ ହେଞ୍ଚାର୍ଡ଼ଙ୍କର ବ୍ୟବହାର ଦେଖିଲୁ

ତ ?... ମୁଁ ଖାଲି ସେହି କଥା ଭାବୁଛି । ଜଣେ ଅଜଣା ଅଶୁଣା ଲୋକ ପ୍ରତି ଯେ ଏତେ ସଦୟ ହୋଇପାରନ୍ତି, ନିଜ ସମ୍ପର୍କୀୟଲୋକଙ୍କୁ ସେ କଦାପି ହତାଦର କରିବେନାହିଁ ।''

ଏ ବିଷୟ ନେଇ ମାଆ ଝିଅଙ୍କ ମଧ୍ୟରେ କିଛି ସମୟ ଆଲୋଚନା ହେବା ପରେ ସ୍ଥିର କରାଗଲା, ଏଲିଜାବେଥ୍ ଜେନ୍ ଯାଇ ହେଞ୍ଚାର୍ଡ଼ଙ୍କୁ ଖବର ଦେବ ଯେ ତାଙ୍କର ସମ୍ପର୍କୀୟା ତଥା ନାବିକ ନ୍ୟୁସନଙ୍କର ବିଧବା ପତ୍ନୀ ସୁସାନ ବର୍ତ୍ତମାନ ଏହି ସହରରେ ରହୁଛନ୍ତି । ଦେଖାଯାଉ, ଏହିତକ ଖବର ଶୁଣି ସେ ଚିହ୍ନା ଦେଉଛନ୍ତି ନା ନାହିଁ । ଶେଷରେ ଏଲିଜାବେଥ୍ ଜେନ୍ ପଚାରିଲା, ''ଯଦି ସେ ଚିହ୍ନା ନଦିଅନ୍ତି ?''

ସୁସାନ କହିଲେ, ''ତା'ହେଲେ କହିଦେବୁ, ଆମେ ଯେପରି ଚୁପ୍‌ଚାପ୍ କାଷ୍ଟରବ୍ରିଜ ଚାଲିଆସିଥିଲୁ, ସେହିପରି ଚୁପ୍‌ଚାପ୍ ଆମ ଗାଆଁକୁ ଫେରିଯିବୁ ।''

''ଯଦି ସେ ଚିହ୍ନା ଦିଅନ୍ତି ?''

ଟିକିଏ ଚିନ୍ତା କରି ସୁସାନ କହିଲେ, ''ତା'ହେଲେ କହିବୁ ମତେ ଦେଖିବା ଲାଗି ସେ କେବେ ଆସିବେ, ଖଣ୍ଡେ ଚିଠି ଲେଖି ଜଣାଇବେ ।

ଦିନ ପ୍ରାୟ ଦଶଟାବେଳକୁ ହେଞ୍ଚାର୍ଡ଼ଙ୍କ ସହିତ ସାକ୍ଷାତ୍ କରିବାଲାଗି ଏଲିଜାବେଥ୍ ବାହାରିପଡ଼ିଲା । ସହରର ପ୍ରଧାନ ସଡ଼କ ଦେଇ ଯାଉ ଯାଉ ହିଁ ହେଞ୍ଚାର୍ଡ଼ଙ୍କ ଘର ପଡ଼ିଲା । ବିରାଟ କୋଠାଘର । ଘର ଆଗରେ ଥିବା ପ୍ରକାଣ୍ଡ ବଗିଚାଟି ସୁନ୍ଦର ଫୁଲପତ୍ରରେ ହସିଉଠୁଥାଏ । ଫାଟକ ଦେଇ ଭିତରକୁ ଚାହିଁବାରୁ ବାରିଅଗଣା ପର୍ଯ୍ୟନ୍ତ ଦେଖାଗଲା । ଜଣେ ଚାକରକୁ ଡାକି ମାଲିକଙ୍କୁ ଦେଖା କରିବାର ଉଦ୍ଦେଶ୍ୟ ଜଣାଇବାରୁ ଚାକରଟି କହିଲା, ''ମାଲିକ ବାରିପଟ ଗୋଦାମ ଅଫିସରେ ଅଛନ୍ତି । ଏହି ବାଟେ ଯାଅ ।'' ଏଲିଜାବେଥ୍ ବାରିପଟକୁ ଯାଇ ଦେଖେ ତ ଧାଡ଼ି ଧାଡ଼ି ଗୋଦାମଘର ରହିଛି, ମାଳ ମାଳ ଗାଡ଼ି ଥୁଆ ହୋଇଛି । କୁଲିମାନେ କାମରେ ବ୍ୟସ୍ତ । ଖୋଜି ଖୋଜି ସେ ଆସି ଅଫିସ୍ ଘର ପାଖରେ ପାଇଲା । ଅଫିସ୍ ଦରଜାରେ ହାତମାରି କହିଲା, ''ଭିତରକୁ ଆସିପାରେ କି ?''

ଭିତରୁ ଶୁଭିଲା, 'ଆସ ?'

ଏଲିଜାବେଥ୍ ଅଫିସ୍ ଭିତରକୁ ପଶିଗଲା । ଦେଖିଲା ଅଫିସ୍ ଭିତରେ ଯେ ଅଛନ୍ତି, ସେ ହେଞ୍ଚାର୍ଡ଼ ନୁହନ୍ତି । ସେ ହେଉଛନ୍ତି ଗତ ରାତିର ସେହି ସ୍କଟିସ୍ ଯୁବକ ଫର୍‌ଫ୍ରେ । ଗୋଟିଏ ବସ୍ତାରୁ ମୁଠାଏ ଗହମ ନେଇ ସେ ପରୀକ୍ଷା

କରିବାରେ ବ୍ୟସ୍ତ । ଗହମ ପରୀକ୍ଷା କରୁ କରୁ ସେ ପଚାରିଲେ, ''କ'ଣ କାମ ଥିଲା ?''

ଇତସ୍ତତଃ ହୋଇ ଏଲିଜାବେଥ୍ କହିଲା, ''ମୁଁ ଟିକିଏ ମେୟର ସାହେବଙ୍କୁ ଦେଖାକରିବାକୁ ଆସିଥିଲି ।''

''ଓ !... ସାହେବ ତ ବର୍ତ୍ତମାନ କାର୍ଯ୍ୟବ୍ୟସ୍ତ ଅଛନ୍ତି; ଟିକିଏ ବସନ୍ତୁ''– କହି ଫରଫ୍ରେ ନିଜ କାମରେ ଲାଗିଗଲେ । ମନେହେଲା, ସେ ଏଲିଜାବେଥ୍‌କୁ ଗତ ରାତିର ହୋଟେଲରେ ପରିଚାରିକା ବୋଲି ଚିହ୍ନିପାରିଲେନାହିଁ । କିଛି ସମୟ ପରେ ହେଞ୍ଚାର୍ଡ଼ ଆସି ଅଫିସ୍‌ରେ ପହଞ୍ଚିଗଲେ । ଶଙ୍କିତ ହୋଇ ଏଲିଜାବେଥ୍ କହିଲା, ''ଆପଣଙ୍କ ପାଖକୁ ମୁଁ ଗୋଟିଏ ଖବର ଆଣିଥିଲି; କହିପାରେ କି ?''

ଏଲିଜାବେଥ୍‌ର ମୁହଁକୁ ଚାହିଁଦେବାମାତ୍ରେ ହେଞ୍ଚାର୍ଡ଼ଙ୍କ ଭିତରେ ଗୋଟାଏ ଭାବାନ୍ତର ଜାତ ହୋଇଗଲା । ସେ କହିଲେ, ''କି ଖବର ମାଆ ?''

ଏଲିଜାବେଥ୍ ସରଳ ଭାବରେ କହିଲା, ''ଆପଣଙ୍କର ଜଣେ ଦୂର ସମ୍ପର୍କୀୟ ମହିଳା ସୁସାନ ନ୍ୟୁସନ ବର୍ତ୍ତମାନ ଏ ସହରରେ ରହିଛନ୍ତି । ନାବିକ ନ୍ୟୁସନଙ୍କର ମୃତ୍ୟୁ ପରେ ସେ ବିଧବା ହୋଇ ରହିଛନ୍ତି ।''

ଖବରଟା ଶୁଣୁ ଶୁଣୁ ହେଞ୍ଚାର୍ଡ଼ଙ୍କ ମୁହଁ ନିଷ୍ପ୍ରଭ ହୋଇଗଲା । ଅନ୍ତର ଭିତରେ ଚେଇଁଉଠିଲା ଗୋଟାଏ କୋହ । ଯାହାହେଉ, ମନର କୋହ ଲୁଚାଇ ରଖି ସେ ପଚାରିଲେ, ''ସୁସାନ୍ ? ...ସୁସାନ୍ ତା'ହେଲେ ବଞ୍ଚିଛି ??''

–ଆଜ୍ଞା ହଁ, ବଞ୍ଚିଛନ୍ତି ।

–ଏବଂ ତୁମେ ତା' ଝିଅ ?

–ଆଜ୍ଞା, ମୁଁ ହିଁ ତାଙ୍କର ଏକମାତ୍ର ସନ୍ତାନ ।

–ତୁମ ନାଁଟି କ'ଣ ମା' ?

–ମୋ ନାଁ ଏଲିଜାବେଥ୍ ଜେନ୍ ।

–ଘର, ସଂଜ୍ଞା ? ...ନ୍ୟୁସନ୍ ?

–ହଁ, ମୋ ପୂରା ନାମ ହେଲା ଏଲିଜାବେଥ୍ ଜେନ୍ ନ୍ୟୁସନ୍ ।

ସଙ୍ଗେ ସଙ୍ଗେ ହେଞ୍ଚାର୍ଡ଼ ବୁଝିଗଲେ ଯେ ଊଣେଇଶ ବର୍ଷ ତଳେ ୱେଡନ୍ ମେଳା ପଡ଼ିଆରେ ସେ ଯେଉଁ ଅମାନୁଷିକ କାର୍ଯ୍ୟ କରିଥିଲେ, ଝିଅକୁ ତା'ର ବିନ୍ଦୁବିସର୍ଗ ପର୍ଯ୍ୟନ୍ତ ଜାଣିବାକୁ ଦିଆଯାଇନାହିଁ । ତାଙ୍କର ଏତେ ନିର୍ଦ୍ଦୟତା ସତ୍ତ୍ୱେ ସୁସାନ୍ ଯେ ତାଙ୍କ ପ୍ରତି କୌଣସି ନିଷ୍ଠୁରତା ଦେଖାଇନାହିଁ, ଏହି ତା'ର ପ୍ରମାଣ । ଏହିତକ ଜାଣିଦେବାମାତ୍ରେ ହୃଦୟ ତାଙ୍କର ଗଭୀର କୃତଜ୍ଞତାରେ ଥରିଉଠିଲା ।

"ଖବରଟା ପାଇ ମୁଁ ବିଶେଷ ଆନନ୍ଦିତ ହେଲି ମାଆ । ତୁମ ସହିତ ମୋର ଆହୁରି ଅନେକ କଥାଭାଷା ହେବାର ଅଛି । ଏ ତ ବ୍ୟବସାୟ କଥା ନୁହେଁ, ଏଇଟା ଆମର ଘରୋଇ କଥା । ଆସ, ଭିତରକୁ ଯିବା ।" କହି ସେ ଏଲିଜାବେଥ୍‌କୁ ନେଇ ଅଫିସ୍‌ରୁ ଘର ଭିତରକୁ ଚାଲିଗଲେ । ଭିତରେ ଝିଅକୁ ବସିବାକୁ କହି ନିଜେ ତା' ପାଖରେ ବସିପଡ଼ି କହିଲେ, "ମାଆଙ୍କ ଦେହପା' ଭଲ ଅଛି ?"

ଏଲିଜାବେଥ୍ କହିଲା, "ଆପଣଙ୍କୁ ଖୋଜିବା ଲାଗି ଆମେ ବହୁତ ଆଡ଼େ ବୁଲିଛୁ; ବିଭିନ୍ନ ଜାଗା ବୁଲି ବୁଲି ମାଆ ବଡ଼ କ୍ଳାନ୍ତ ହୋଇପଡ଼ିଛନ୍ତି ।"

ଗଭୀର ଚିନ୍ତାରେ କିଛି ସମୟ ନିମଗ୍ନ ରହିବା ପରେ ହେଞ୍ଚାର୍ଡ଼ ପଚାରିଲେ, "ନାବିକ ନ୍ୟୁସନ୍‌ଙ୍କର ବିଧବା ପତ୍ନୀ... ସୁସାନ୍... ନା ? ସେ ମରିବାର କେତେ ଦିନ ହୋଇଗଲାଣି ?"

"ଗତ ନଭେମ୍ବର ମାସରେ ତାଙ୍କ ଜାହାଜଟା ମଝି ଦରିଆରେ କେଉଁଠି ବୁଡ଼ିଗଲା, ତା'ର ପତ୍ତା ମିଳିଲାନାହିଁ ।"

—ମାଆ ତା' ହେଲେ ବର୍ତ୍ତମାନ ରହୁଛନ୍ତି କେଉଁଠି ?

—ଏଇଠି, ଥ୍ରି ମାରିନର୍ସ ହୋଟେଲରେ ।

"ହୁଁ... ତା'ହେଲେ ତୁମେ ସୁସାନର ଝିଅ, ଏଲିଜାବେଥ୍ ଜେନ୍ ନା ?" —ବିସ୍ମୟାଭିଭୂତ ହେଞ୍ଚାର୍ଡ଼ଙ୍କ ମୁହଁରୁ ଏ ପ୍ରଶ୍ନଟା ବାହାରିଆସିଲା । ଆଖି ତାଙ୍କର ଛଳଛଳ ହୋଇଗଲା ଲୁହରେ । ମୁହଁ ଲୁଚାଇଦେଇ ଆଖି ପୋଛିପକାଇ ସେ କହିଲେ, "ଭାବୁଛି ଯେ ତୁମ ମାଆଙ୍କ ନିକଟକୁ ମୁଁ ଖଣ୍ଡେ ଚିଠି ଦେବି; ମୁଁ ଟିକିଏ ତାଙ୍କୁ ଦେଖିବାକୁ ଚାହେଁ ।"

କିଛି ସମୟ ମଧ୍ୟରେ ସେ ଖଣ୍ଡିଏ ଛୋଟ ଚିଠି ଲେଖିଦେଲେ । ପକେଟରୁ ପାଞ୍ଚଖଣ୍ଡ କୋଡ଼ିଏଟଙ୍କିଆ ନୋଟ୍ ବାହାରକରି ସେହି ଚିଠି ସହିତ ରଖି ଗୋଟିଏ ଖାମ୍‌ରେ ବନ୍ଦ କରିଦେଲେ । ଖାମ୍‌ଟିକୁ ଏଲିଜାବେଥ୍ ହାତରେ ଦେଇ କହିଲେ, "ଚିଠିଟି ନେଇ ମାଆଙ୍କୁ ଦେଇଦେବ । ସତ କହୁଛି, ତୁମକୁ ଦେଖି ମୁଁ ଭାରି... ଭାରି ଖୁସିହେଲି ।"

ବିଦାୟ ଦେବାବେଳେ ସେ ଏତେ ସ୍ନେହ, ଏତେ ଆଦରରେ ଏଲିଜାବେଥ୍‌ର ହାତ ଦୁଇଟି ଧରିପକାଇଲେ ଯେ, ସେ ଆତ୍ମୀୟତାରେ ସ୍ନେହ-କାଙ୍ଗାଳୁଣୀ

ଏଲିଜାବେଥ୍‌ର ଆଖି ଦୁଇଟି ଲୁହରେ ଭରିଗଲା । ବାଷ୍ପରୁଦ୍ଧ କଣ୍ଠରେ ବିଦାୟ ନେଇ ସେ ହୋଟେଲକୁ ଫେରିଆସିଲା ।

ଚିଠିଟି ପାଇବାକ୍ଷଣି ସୁସାନ୍ ଆତୁର ହୋଇ ଖୋଲି ପକାଇଲେ । ଲେଖାଥିଲା—

"ବ୍ରଡ୍ ମାଉଥ୍ ରୋଡ଼ରେ ରିଙ୍ଗ୍ ବୋଲି ଯେଉଁ ପଲଟନ୍ ମଇଦାନଟା ଅଛି, ସେଇଠି ଆଜି ରାତି ଆଠଟାବେଳେ ମୋ ସହିତ ଦେଖାକରିବ । ଆଉ କିଛି ଲେଖୁନାହିଁ; ମୋ ସହିତ ଦେଖାହେବା ପୂର୍ବରୁ ଝିଅକୁ ଆଉ କୌଣସି କଥା କହିବନାହିଁ ।

ମା.ହେ.— ।"

ପାଞ୍ଚଖଣ୍ଡି କୋଡ଼ିଏଟଙ୍କିଆ ନୋଟ୍ ବିଷୟରେ ଚିଠିରେ ସେ କୌଣସି କଥା ଲେଖିନଥିଲେ । ଟଙ୍କାର ପରିମାଣଟାହିଁ ସବୁ ବିଷୟ ସ୍ପଷ୍ଟ କରିଦେଉଥିଲା । ସେଥିରୁ ବେଶ୍ ବୁଝିହେଉଥିଲା ଯେ, ସେ ଯେଉଁ ଦାମ୍ ଦେଇ ସ୍ତ୍ରୀକୁ ବିକିଦେଇଥିଲେ, ସେହି ଦାମ୍ ଦେଇ ତାଙ୍କୁ ପୁଣି କିଣିନେଲେ ।

ଝିଅ ପାଖରେ ଚିଠିର ବିଷୟବସ୍ତୁ ଗୋପନ ରଖି ସୁସାନ୍ ଆତୁର ହୋଇ ଅପେକ୍ଷା କରିବାକୁ ଲାଗିଲେ । ସନ୍ଧ୍ୟା ସାଢ଼େ ସାତ ହେବାମାତ୍ରେ ସେ ଝିଅକୁ କହିଲେ, "ସେ ମୋତେ ଦେଖାକରିବା ଲାଗି ଲେଖିଛନ୍ତି । ମୁଁ ଯାଉଛି; ଫେରିବାଯାଏଁ ଅପେକ୍ଷା କରିଥିବୁ ।"

## ପାଞ୍ଚ

ପ୍ରାଚୀନ ରୋମୀୟମାନେ ସେମାନଙ୍କର କ୍ରୀଡ଼ା-ନୈପୁଣ୍ୟ ପ୍ରଦର୍ଶନ ଲାଗି ଚାରିଦିଗରେ ପାହାଚଘେରା ବିରାଟ ପ୍ରାଙ୍ଗଣମାନ ନିର୍ମାଣ କରୁଥିଲେ । କାଷ୍ଟରବ୍ରିଜ୍ ସହରର ରିଙ୍ଗ ନାମକ ସ୍ଥାନଟି ସେହିପରି ଗୋଟିଏ ପ୍ରାଚୀନ କ୍ରୀଡ଼ାପ୍ରାଙ୍ଗଣ । ହେଞ୍ଚାର୍ଡ଼ ଦେଖିଲେ ଏହିଭଳି ଏକ ସ୍ଥାନହିଁ ଏତେଦିନଧରି ହରାଇ ବସିଥିବା ସ୍ତ୍ରୀ ସହିତ ସାକ୍ଷାତ୍ କରିବାର ନିରାପଦ କ୍ଷେତ୍ର ହେବ । କାରଣ ଭବିଷ୍ୟତ୍ ପନ୍ଥା ନିର୍ଦ୍ଧାରଣ କରିବା ପୂର୍ବରୁ ସୁସାନଙ୍କୁ ନିଜ ଘରକୁ ଡାକିଆଣିବାରେ ନାନା ଅସୁବିଧା ରହିଛି ।

ଘଣ୍ଟାରେ ଠିକ୍ ଆଠଟା ବାଜିବା ବେଳକୁ ସେ ରିଙ୍ଗ୍ ଭିତରକୁ ଚାଲିଗଲେ । ଯାଉ ଯାଉ ଦେଖିଲେ ଜଣେ ମହିଳା ତାଙ୍କରି ଆଡ଼କୁ ଆସୁଛନ୍ତି । ରିଙ୍ଗ୍‌ର ଠିକ୍ ମଝିରେ ଦୁଇଜଣଙ୍କର ସାକ୍ଷାତ୍ ହୋଇଗଲା । ପ୍ରଥମେ କାହାରି ପାଟିରୁ କଥା ବାହାରିଲାନାହିଁ । ଅସହାୟା ମହିଳା ଜଣକ ଧୀରେ ଧୀରେ ଢଳିପଡ଼ିଲେ ହେଞ୍ଚାର୍ଡ଼ଙ୍କ ଉପରକୁ । ତାଙ୍କୁ ଛାତି ଉପରେ ରଖି ବାହୁବନ୍ଧନ ଭିତରେ ଆଶ୍ରୟ ଦେଇ ହେଞ୍ଚାର୍ଡ଼ ବାଷ୍ପାକୁଳ କଣ୍ଠରେ କହିଉଠିଲେ, ''ପ୍ରାଣର ସୁସାନ୍ ତୁମେ ବଞ୍ଚିଛ ବୋଲି ମୁଁ ଜାଣିପାରିନଥିଲି, ସୁସାନ୍ ! ବହୁଦିନଧରି ତୁମକୁ ଖୋଜି ଖୋଜି ମୁଁ ଯେତେବେଳେ କୌଣସି ସନ୍ଧାନ ପାଇଲିନାହିଁ, ସେତେବେଳେ ଧରିନେଲି ତୁମେ ସେ ନାବିକ ସହିତ ବିଦେଶ ଚାଲିଗଲ ଏବଂ ସମୁଦ୍ରରେ ତୁମ ଜାହାଜ ବୋଧହୁଏ ବୁଡ଼ିଗଲା । ଏତେଦିନଯାଏ ତୁମେ କିପରି ଚୁପ୍‌ଚାପ୍ ରହିଗଲ କହ ତ ?''

ସୁସାନ୍‌ଙ୍କ ଆଖିରୁ ଝରିପଡ଼ିଲା ବହୁଦିନର ସଞ୍ଚିତ ଲୁହ । ନାରୀ ହୃଦୟର ସମସ୍ତ ଦୁର୍ବଳତା ପ୍ରକାଶ କରି ସେ କହିବସିଲେ, ''ମତେ କ୍ଷମା କର, ମାଇକେଲ୍ ! ସେହି ନ୍ୟୁସନ୍‌ହିଁ ମୋର ପ୍ରତିବନ୍ଧକ ହେଲେ । ମୁଁ ଭାବିଲି ସେ ମୋତେ କିଣିଛନ୍ତି, ତେଣୁ ତାଙ୍କ ପ୍ରତି ବିଶ୍ୱସ୍ତ ରହିବା ମୋର କର୍ତ୍ତବ୍ୟ । ଧରିନେଲି, ଏ କିଣାବିକା ଭିତରେ ମଧ ଏକ ପବିତ୍ର ସମ୍ପର୍କ ରହିଛି । ସେହିତକ ହିଁ ମୋର ଭୁଲ, ମାଇକେଲ୍ ।''

ସୁସାନ୍‌ଙ୍କ ଆଖିରୁ ଲୁହପୋଛି ଦେଉ ଦେଉ ହେଞ୍ଚାର୍ଡ଼ କହିଲେ, ''ସତରେ ତୁମେ ବଡ଼ ସରଳ, ସୁସାନ୍ ! ତୁମର ସେ ସରଳତା ଆମକୁ ବର୍ତ୍ତମାନ କେଡ଼େ ଅସୁବିଧାରେ ନପକାଇଲା ସତେ !''

ସୁସାନ୍ ଶଙ୍କିତ ହୋଇଗଲେ । ପଚାରିଲେ, ''କି ଅସୁବିଧା, ମାଇକେଲ୍ ?''

''ଆମେ ପୁଣି ସ୍ୱାମୀ-ସ୍ତ୍ରୀ ହୋଇ ରହିବାରେ ଯେଉଁ ଅସୁବିଧା ସୃଷ୍ଟି ହେଲା, ସେହି ଅସୁବିଧା କଥା କହୁଥିଲି । ଏଲିଜାବେଥ୍ ଜେନ୍ ଯଦି ଆମର ସବୁକଥା ଜାଣିଯାଏ, ତେବେ ସେ ଆମ ଉଭୟଙ୍କୁ ଘୃଣା କରିବ; ଏପରି ଘୃଣା କରିବ ଯେ ଆମ ଜୀବନଟା ଦୁର୍ବହ ହୋଇଉଠିବ ।'' ସଞ୍ଚିତ ଆବେଗରେ ସ୍ତ୍ରୀଙ୍କର ମୁଖ ଚୁମ୍ବନ କରୁ କରୁ ହେଞ୍ଚାର୍ଡ଼ ପୁଣି କହିଉଠିଲେ, ''ତୁମେ ଶୁଣିଥିବ, ମୁଁ ଆଜିକାଲି ଏଠାରେ ଏକ ବଡ଼ ବ୍ୟବସାୟ ଖୋଲିଛି । ମୁଁ ବର୍ତ୍ତମାନ ଏ ସହରର ମେୟର ।

ଏସବୁ ଦୃଷ୍ଟିରୁ ଆମକୁ ଅତି ସାବଧାନରେ କାମ କରିବାକୁ ପଡ଼ିବ; ଝିଅ ଯେପରି ଆମ ଅତୀତ କାହାଣୀ ଜାଣିନପାରେ । ପୁଣି ଯେଉଁ ସ୍ତ୍ରୀ, ଯେଉଁ ଝିଅଙ୍କୁ ସେଦିନ ମୁଁ ଏତେ ନିଷ୍ଠୁରତା ଦେଖାଇ ଅନ୍ୟାୟ ଭାବରେ ଅନ୍ତର କରିଦେଇଥିଲି, ସେମାନଙ୍କୁ କିପରି ଯେ ପୁଣି ସର୍ବସମକ୍ଷରେ ଘରକୁ ଫେରାଇଆଣିବି, ମୁଁ ବୁଝିପାରୁନାହିଁ । ଆମର ଚରିତ୍ର ବିଷୟରେ, ଆମର ସମ୍ପର୍କ ବିଷୟରେ ଲୋକେ ବଳେ ସନ୍ଦେହ କରିବସିବ । ତେଣୁ ମୁଁ ଗୋଟାଏ କଥା ଭାବିଛି— ଭାବିଛି, ନ୍ୟୁସନ୍‌ଙ୍କର ବିଧବା ପତ୍ନୀ ହିସାବରେ ହୋଟେଲରୁ ଚାଲିଯାଇ ତୁମେ ଖଣ୍ଡେ ଘର ଭଡ଼ା ନେଇ ଏଲିଜାବେଥ୍ ଜେନ୍ ସହିତ ରହ । ମୁଁ ସେଠାରେ ତୁମ ସହିତ ଅବାଧରେ ସାକ୍ଷାତ୍ କରିପାରିବି । ମୋ ବ୍ୟବହାରରୁ କ୍ରମଶଃ ଜଣାପଡ଼ିବ ଯେ ମୁଁ ତୁମକୁ ପ୍ରେମ କରେ । ସେହି ସୂତ୍ରରେ ମୁଁ ତୁମକୁ ବିବାହ କରିବା ପ୍ରସ୍ତାବ ବ୍ୟକ୍ତ କରିବି । ଆମ ସମାଜ ଓ ନିୟମ ଅନୁଯାୟୀ ତାହା ଦୋଷାବହ ହେବନାହିଁ । ଏଣୁ ଆମ ଅତୀତ ବିଷୟରେ କେହି ଜାଣିପାରିବେନାହିଁ । ଶେଷରେ ଚର୍ଚ୍ଚରେ ଆମର ପୁନର୍ବିବାହ ହୋଇଯିବ ଏବଂ ସମ୍ମାନ ଓ ଗୌରବ ସହକାରେ ମୁଁ ମୋର ସ୍ତ୍ରୀ ଓ ଝିଅକୁ ଘରକୁ ନେଇ ଆନନ୍ଦରେ ଜୀବନ କଟାଇପାରିବି ।''

''ଯାହା ଭଲ ହେବ ସେଇଆ କର, ମାଇକେଲ୍ । ମୋର କୌଣସିଥିରେ ଆପତ୍ତିନାହିଁ ।'' – ସୁସାନ୍ କହିଲେ ।

''ତରତର ହେବାର ପ୍ରୟୋଜନନାହିଁ । ତୁମେ ବି ବିଚାର କର । ଏ ପ୍ରସ୍ତାବଟା ଯଦି ଠିକ୍ ବୋଲି ଭାବୁଛ, ତେବେ ମୁଁ ଭଡ଼ାରେ ଖଣ୍ଡେ ଘର ନେଇଯିବି ।... ହଉ, ରାତି ବହୁତ ହେଲାଣି, ହୋଟେଲକୁ ଫେରିଯିବାର ବେଳ ବି ହେଲାଣି । ଆସ, ମୁଁ ତୁମକୁ କିଛି ବାଟ ବଳେଇଦେଇ ଆସେ ।''

ବ୍ୟସ୍ତ ହୋଇ ସୁସାନ୍ କହିଲେ, ''ନା, ନା, ସେଥିରେ ବିପଦ ଅଛି, କାଳେ କିଏ ସନ୍ଦେହ କରିବ । ମୁଁ ମୋର ଏକାଟିଆ ଚାଲିଯାଇପାରିବି ।''

କ୍ଷୁଣ୍ଣ ମନରେ ହେଞ୍ଚାର୍ଡ଼ କହିଲେ, ''ଠିକ୍ ଅଛି– କିନ୍ତୁ ଗୋଟାଏ କଥା– ସତ କହ, ସୁସାନ୍ ! ତୁମେ ମୋତେ କ୍ଷମା କରିଛ ତ ?''

ସୁସାନ୍‌ଙ୍କର କଣ୍ଠ ରୁଦ୍ଧ ହୋଇଗଲା । ସେ କୌଣସି ଉତ୍ତର ଦେଇପାରିଲେନାହିଁ । ହେଞ୍ଚାର୍ଡ଼ କହିଲେ, ''ବ୍ୟସ୍ତ ହେବାର କିଛି ନାହିଁ । ସେକଥା ତୁମେ ପରେ କହିପାରିବ । କିନ୍ତୁ ଗୋଟାଏ ଅନୁରୋଧ, ମୋର କାର୍ଯ୍ୟକଳାପ ଦେଖିସାରିବା ପରେ ନିଜର ମତାମତ ଦେବ । ଆଜିପାଇଁ ବିଦାୟ ।''

ଉଭୟେ ଉଭୟଙ୍କଠାରୁ ବିଦାୟ ନେଇ ଚାଲିଗଲେ ସତ; କିନ୍ତୁ ହେଞ୍ଚାର୍ଡ୍ ଆଉ ସେଦିନ ରାତିରେ ଶାନ୍ତିରେ ଶୋଇପାରିଲେନାହିଁ । ତାଙ୍କ ମନରେ ଦେଖାଗଲା ଏକ ବିରାଟ ଦ୍ୱନ୍ଦ୍ୱ । ସେ କାଷ୍ଟରବ୍ରିଜ୍‌ର ମେୟର ରୂପରେ ଅଧିଷ୍ଠିତ ହୋଇଥିଲେ ସତ; କିନ୍ତୁ ତାଙ୍କର ପାରିବାରିକ ଜୀବନରେ ଏଯାବତ୍ ନୀରବତା ହିଁ ବିରାଜମାନ କରୁଥିଲା । ସେ ଗୋଟାଏ ନିଃସଙ୍ଗ, ନିର୍ବାନ୍ଧବ ଜୀବନଯାପନ କରି ଚାଲିଥିଲେ । ଲୋକେ ତାଙ୍କୁ ଭଲପାଉଥିଲେ କେବଳ ତାଙ୍କର ଦୃଢ଼ତା, ସତ୍ୟାନୁବ୍ରତୀତା ଲାଗି; କେହି କେବେ ତାଙ୍କଠାରେ ନମନୀୟତା ବୋଲି କୌଣସି ଗୁଣ ଦେଖିନଥିଲେ । ତାଙ୍କୁ ପ୍ରଶଂସା କରୁଥିଲେ ଅନେକ; କିନ୍ତୁ ତାଙ୍କର ଅନ୍ତରଙ୍ଗ ବନ୍ଧୁ ବୋଲି ଜଣେ ହେଲେ ନଥିଲେ, ଯାହା ଆଗରେ କି ସେ ମନଖୋଲି ଦୁଇପଦ କଥା କହିପାରିବେ । ଆଜି କିନ୍ତୁ ମନ ତାଙ୍କର ଅସ୍ଥିର ହୋଇଉଠିଲା, ଅନ୍ତରାତ୍ମା ଖୋଜିବୁଲିଲା ବେଦନାବିଦ୍‌ଗଧ ମନକୁ କାହା ଆଗରେ ଟିକିଏ ଖୋଲିଦେଇ ଏ ଦ୍ୱନ୍ଦ୍ୱର ସମାଧାନ ଲାଗି ପଦଟାଏ ଉପଦେଶ ମାଗିନେବେ । ମନେ ମନେ ଖୋଜୁ ଖୋଜୁ ତାଙ୍କ ଆଖିଆଗରେ ନାଚିଉଠିଲା ଯୁବକ ଫରଫ୍ରେଙ୍କର ମୁଖ । ଏହି ଦୁଇଟା ଦିନର ପରିଚୟ ଭିତରେ ସେ କାହିଁକି ତାଙ୍କୁ ଅପାର ସ୍ନେହ କରି ବସିଥିଲେ । ଫରଫ୍ରେଙ୍କଠାରେ ତାଙ୍କର ଅଗାଧ ବିଶ୍ୱାସ ଜନ୍ମିଯାଇଥିଲା । ଭାବୁ ଭାବୁ ହେଞ୍ଚାର୍ଡ୍ ଗୋଦାମ ଘରଆଡ଼େ ଚାଲିଗଲେ । ଅଫିସ୍ ଘରେ ଆଲୁଅ ଜଳୁଥିଲା । ଫରଫ୍ରେ ସେପର୍ଯ୍ୟନ୍ତ କାମରେ ଲାଗିଛନ୍ତି ଦେଖି ହେଞ୍ଚାର୍ଡ୍‌ଙ୍କର ହୃଦୟ ଗଭୀର ଅନୁରାଗରେ ପୂର୍ଣ୍ଣ ହୋଇଗଲା । ସେ ଅଫିସ୍ ଭିତରକୁ ଯାଇ କହିଲେ, ''ରଖ ଫରଫ୍ରେ, ଆଜି କାମ ଏତିକିରେ ରଖ । ରାତି ଅନେକ ହେଲାଣି, ଆସ, ଆଜି ଆମେ ଏକାଠି ବସି ଖାଇବା ।''

କ୍ଳାନ୍ତ ଫରଫ୍ରେ କାମଦାମ ସାରି ନିଜ ବସାଘରକୁ ଯାଇ ବିଶ୍ରାମ ନେବେ ବୋଲି ସ୍ଥିର କରିଥିଲେ; କିନ୍ତୁ ହେଞ୍ଚାର୍ଡ୍‌ଙ୍କର ନିମନ୍ତ୍ରଣ ଶୁଣି ସେ ଭାବିଲେ, ''ବିଚରା ଏକାଟିଆ ରହିଛନ୍ତି, ଯାଏ; ମନାକଲେ ଦୁଃଖ କରିବେ ।''

ଖିଆପିଆ ଶେଷ ହେବାବେଳକୁ ରାତି ବଢ଼ିଯିବା ସଙ୍ଗେ ସଙ୍ଗେ ବେଶ୍ ଶୀତ ବି ପଡ଼ିଯାଇଥାଏ । ଫରଫ୍ରେଙ୍କୁ ଡାକି ହେଞ୍ଚାର୍ଡ୍ କହିଲେ, ''ଆସ, ନିଆଁ ପାଖକୁ ଚଉକିଟା ଘୁଞ୍ଚାଇ ଆଣ; ଟିକିଏ ଉଷୁମରେ ବସିବା । ତୁମ ସହିତ ମୋର କେତେଟା କଥା ଅଛି ।''

ବିହେଁ ନିଆଁ ପାଖରେ ବସି ହାତଗୋଡ଼ ସେକି ହେଉ ହେଉ ହେଞ୍ଚାର୍ଡ଼ ଆରମ୍ଭ କଲେ, ''ତୁମ ସହିତ ମୋର ସମ୍ପର୍କଟା ସମ୍ପୂର୍ଣ୍ଣ ବ୍ୟବସାୟଗତ; ତା' ମଧ୍ୟ ଦିନେ ଦେଢ଼ ଦିନର ହେବ । ତୁମେ ବିସ୍ମିତ ହେବ ଯେ ମୁଁ ବର୍ତ୍ତମାନ ତୁମକୁ ମୋର ଏକ ପାରିବାରିକ କଥା କହିବାକୁ ଯାଉଛି । କିନ୍ତୁ ଦେଖ, ଫରଫ୍ରେ, ମୁଁ ଗୋଟାଏ ନିଃସଙ୍ଗ ଲୋକ, ମନଖୋଲି ଦୁଇପଦ କଥାଭାଷା ହେବାଲାଗି ମୋର ବୋଲି ଆଉ ଏଠାରେ କେହିନାହିଁ ।''

ଆଶ୍ୱାସନା ଦେଇ ଫରଫ୍ରେ କହିଲେ, ''ଧନ୍ୟବାଦ, ଆଜ୍ଞା ! ଆପଣଙ୍କର ମନକଥା ଶୁଣିବାରେ ମୋର କୌଣସି ଆପତ୍ତିନାହିଁ । ମୁଁ ବରଂ ମୋର ମାଲିକଙ୍କ କଥା ଶୁଣିବାକୁ ପାଇଲେ ଆନନ୍ଦିତ ହେବି ଏବଂ ଆବଶ୍ୟକ ହେଲେ ମୁଁ ଆପଣଙ୍କୁ ମୋର ସାଧ୍ୟମତେ ସାହାଯ୍ୟ କରିବାକୁ ପ୍ରସ୍ତୁତ ।''

ଇତସ୍ତତଃ ହୋଇ ହେଞ୍ଚାର୍ଡ଼ ନିଜ ଜୀବନର ସମସ୍ତ କାହାଣୀ ଶୁଣାଇଗଲେ । ଓ୍ୱେଡନ୍ ମେଳା ପଡ଼ିଆରେ ପ୍ରାୟ ଉଣେଇଶ ବର୍ଷ ତଳେ ଯେଉଁ ଘଟଣା ଘଟିଯାଇଥିଲା, ତାହା ପ୍ରକାଶ କରି ସେ କିପରି ଧର୍ମ-ମନ୍ଦିରରେ ଶପଥ କରି ମାସ ମାସ ଧରି ସୁସାନ୍‌କୁ ଖୋଜି ବୁଲୁଛନ୍ତି, କିପରି ସକଳ ଚେଷ୍ଟା ବ୍ୟର୍ଥ ହୋଇଛି ଏବଂ କିପରି ସେ ଏପର୍ଯ୍ୟନ୍ତ ବିପତ୍ନୀକ ହୋଇ ରହିଛନ୍ତି ଇତ୍ୟାଦି ଇତ୍ୟାଦି ବିଷୟ ବର୍ଣ୍ଣନା କରି ଶେଷରେ ସେ କହିଲେ, ''ଆଜିପର୍ଯ୍ୟନ୍ତ ମୁଁ ମୋର ସ୍ତ୍ରୀର କୌଣସି ସମ୍ବାଦ ପାଇନଥିଲି; କିନ୍ତୁ ଆଜି— ଆଜି ସକାଳେ ସମ୍ବାଦ ପାଇଲି ଯେ ସେ ଏଠାକୁ ଫେରିଆସିଛନ୍ତି ।''

ବିସ୍ମୟ-ବିହ୍ୱଳ ହୋଇ ଫରଫ୍ରେ କହିଉଠିଲେ, ''ଫେରିଆସିଛନ୍ତି ? ତା'ହେଲେ ତ ଆପଣ ତାଙ୍କୁ ବିନା ପ୍ରଶ୍ନରେ ଗ୍ରହଣ କରି ଅତୀତର ଦୁଃଖ ନିର୍ଯାତନା ଭୁଲିଯିବାଲାଗି ଉତ୍ସାହ ଯୋଗାଇଦେବା ଉଚିତ ହେବ ।''

ମେୟର କହିଲେ, ''ମୁଁ ବି ସେହି କଥା ଭାବୁଛି; କିନ୍ତୁ ସମସ୍ୟା ହେଉଛି ସୁସାନ୍ ପ୍ରତି ମୁଁ ମୋର କର୍ତ୍ତବ୍ୟ ପାଳନ କରିବାକୁ ଗଲେ, ଅନ୍ୟ ଜଣେ ସରଳା ଅବଳା ପ୍ରତି ଅନ୍ୟାୟ କରିବାକୁ ପଡ଼ିବ ।''

ଫରଫ୍ରେ ମୂକ ହୋଇଗଲେ; କ'ଣ କହିବେ କିଛି ସ୍ଥିର କରିପାରିଲେ ନାହିଁ । ବିଷୟଟାକୁ ପ୍ରାଞ୍ଜଳ କରି ହେଞ୍ଚାର୍ଡ଼ କହିଚାଲିଲେ, ''ଗତ କିଛି ବର୍ଷ ଧରି ବ୍ୟବସାୟ ସଂକ୍ରାନ୍ତରେ ମତେ ଜେରେସୀ ଅଞ୍ଚଳକୁ ଯିବାକୁ ପଡୁଛି । ଗତ ଶରତ୍ ଋତୁର କଥା; ଜେରେସୀରେ ଥିବାବେଳେ ହଠାତ୍ ମୁଁ ଅସୁସ୍ଥ ହୋଇପଡ଼ିଲି । ମୁଁ

ଗୋଟିଏ ଭଡ଼ାଘରେ ରହୁଥାଏ । ମୋ ସାଙ୍ଗରେ ଅନ୍ୟ କେହି ନଥାନ୍ତି; କିନ୍ତୁ ସେହି ଘରେ ଜଣେ ଯୁବତୀ ରହୁଥିଲେ । ମୋର ଅସହାୟ ଅବସ୍ଥା ଦେଖି ସେ ଯୁବତୀଙ୍କ ମନରେ ଦୟା ହେଲା । ସେ ଆସି ମୋର ବହୁ ସେବା-ଶୁଶ୍ରୂଷା କରିବାକୁ ଲାଗିଲେ । ତାଙ୍କ ବାପା ଜଣେ ସୈନିକ କର୍ମଚାରୀ ଥିଲେ; କିନ୍ତୁ ସେତେବେଳକୁ ତାଙ୍କ ବାପା-ମାଆ ଉଭୟେ ଇହଧାମ ଛାଡ଼ି ଗଲେଣି । ନିଜେ ବଡ଼ ଅଭାବରେ ଚଳୁଥିଲେ ବି ମୋ ସେବାରେ ସେ ତିଳେହେଲେ ଅବହେଳା କଲେନାହିଁ । ତାଙ୍କ ମନରେ ମୋ ପ୍ରତି ଗୋଟାଏ ଅନୁରାଗ ଚାଲିଆସିଥିଲା ଏବଂ ତାଙ୍କରି ସେବାରେ ମୁଁ ସୁସ୍ଥ ହୋଇ ବସିଲି; କିନ୍ତୁ ସେହି ସାନ୍ନିଧ ଆମ ଭିତରେ ପ୍ରେମର ସୂତ୍ରପାତ କଲା । ସେ ସବୁର ବର୍ଣ୍ଣନା ଆଉ କ'ଣ କରିବି ! ଆମର ସେ ହସଖୁସି ଭିତରେ ଗୋଟାଏ ଭଲ ଉଦ୍ଦେଶ୍ୟ ରହିଥିଲା ଯେ, ଆମେ ପରସ୍ପରକୁ ବିବାହ କରିବୁ । ସେଠାରୁ ଫେରିବାବେଳେ ମୁଁ କହିଥିଲି, ମୁଁ ଶେଷ ଥର ଲାଗି ସୁସାନ୍‌ଙ୍କର ଅନୁସନ୍ଧାନ କରିନେବି; ଯଦି ଦେଖାନହୁଏ, ତେବେ... । କିନ୍ତୁ ବର୍ତ୍ତମାନ ତ ଦେଖୁଛନ୍ତି, ଆମର ସେ ଯୋଜନା ଉପରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା; ସୁସାନ୍ ଏଠାକୁ ଫେରିଆସିଛନ୍ତି । ବର୍ତ୍ତମାନ କ'ଣ କିପରି କରିବି ବୁଝିପାରୁନାହିଁ ।''

ସହାନୁଭୂତିପୂର୍ଣ୍ଣ କଣ୍ଠରେ ଡୋନାଲ୍‌ଡ ଫର୍‌ଫ୍ରେ କହିବସିଲେ, ''ସେ ଉଭୟେ ସନ୍ତପ୍ତ ହୋଇ ରହିଛନ୍ତି, ତଥାପି ନିଜ ସ୍ତ୍ରୀଙ୍କର ଶୋକସନ୍ତପ୍ତ ଦୂର କରିବାହିଁ ଆପଣଙ୍କର ପ୍ରଥମ କର୍ତ୍ତବ୍ୟ । ଅନ୍ୟ ଯୁବତୀଙ୍କୁ ଖଣ୍ଡିଏ ଚିଠି ଲେଖି ସତକଥାଟା ଜଣାଇଦିଅନ୍ତୁ; ମୋର ବିଶ୍ୱାସ, ନିଶ୍ଚୟ ସେ କ୍ଷମା ଦେବେ ।''

ଗୋଟାଏ ଦୀର୍ଘନିଃଶ୍ୱାସ ପକାଇ ହେଞ୍ଚାର୍ଡ଼ କହିଲେ, ''ଠିକ୍ କହିଛ, ଫର୍‌ଫ୍ରେ ! କିନ୍ତୁ ଦେଖୁଛି ତାଙ୍କର ସାହାଯ୍ୟଲାଗି ମତେ ତାଙ୍କ ପାଖକୁ କିଛି ଟଙ୍କା ପଇସା ବି ପଠାଇବାକୁ ପଡ଼ିବ ।... ହଉ, ମୁଁ ଡାକିଦେଉଛି, ଦୟାକରି ତାଙ୍କ ପାଖକୁ ଖଣ୍ଡେ ଚିଠି ଲେଖିଦିଅ; ମୋର ହସ୍ତାକ୍ଷର ନିତାନ୍ତ କଦର୍ଯ୍ୟ ।''

ଡୋନାଲ୍‌ଡ ବିନା ଆପତ୍ତିରେ ଜେରେସୀର ସେହି ଯୁବତୀଙ୍କ ପାଖକୁ ଚିଠିଖଣ୍ଡିକ ଲେଖିଦେଲେ । ହେଞ୍ଚାର୍ଡ଼ ସେହି ଚିଠି ସହିତ ମୋଟା ଟଙ୍କାର ଗୋଟାଏ ଚେକ୍ ବି ଖାମ୍ ଭିତରେ ବନ୍ଦ କରିଦେଲେ । ତା' ପରଦିନ ସକାଳୁ ଚିଠିଖଣ୍ଡିକ ଡାକଘରେ ଦେଇ ଫେରିବାବେଳେ ସେ ମନେ ମନେ ଭାବିବାକୁ ଲାଗିଲେ, ''କ'ଣ ଏହିତକରେ ସବୁ ସମାଧାନ ହୋଇଯିବ ? ହାୟରେ ବିଚାରୀ... ।

ଭଗବାନ୍ ହିଁ ତୁମର ସହାୟ ! ମୁଁ ନାଚାର... ସୁସାନ୍ ପ୍ରତି କର୍ତ୍ତବ୍ୟରେ ଅବହେଳା କରିବା ମୋର ଅନ୍ୟାୟ ହେବ ।''

ଦୁଇ ଚାରିଦିନ ମଧ୍ୟରେ ସୁସାନ୍‌ଙ୍କୁ ନାବିକ ନ୍ୟୁସନ୍‌ଙ୍କ ବିଧବା ପତ୍ନୀ ରୂପରେ ପରିଚିତ କରାଇ ତାଙ୍କ ନାମରେ ଖଣ୍ଡେ ଭଡ଼ାଘର ନିଆଗଲା । ମାଆଝିଅ ଯାଇ ସେଠାରେ ଆରାମରେ ରହିଯିବା ପରେ ହେଞ୍ଚାର୍ଡ଼ ସେଠାକୁ ଯାଇ ଚାହା ଜଳଖିଆ ଖାଇ ବନ୍ଧୁତ୍ୱ ଜମାଇବାର ବାହାନା କଲେ । ପରେ ପରେ ତାଙ୍କୁ ସେଠାକୁ ବାରମ୍ବାର ଯିବାର ଦେଖାଗଲା । କିଛି ଦିନ ମଧ୍ୟରେ ଲୋକେ ଧରିନେଲେ ଯେ ହେଞ୍ଚାର୍ଡ଼ଙ୍କର ସେଠାକୁ ଘନ ଘନ ଯିବାରେ କିଛି ଏକ ଉଦ୍ଦେଶ୍ୟ ରହିଛି । ଦିନକର କଥା, ଘରେ ଏଲିଜାବେଥ୍ ନଥାଏ; ସୁଯୋଗ ପାଇ ହେଞ୍ଚାର୍ଡ଼ ସୁସାନ୍‌ଙ୍କୁ ପଚାରିଲେ, ''ଏଥର କହ ସୁସାନ୍, ଆମର ବିବାହ ପାଇଁ କେଉଁ ଦିନଟା ଧାର୍ଯ୍ୟ କଲେ ସୁବିଧା ହେବ ?''

ବିବାହ ଦିନ ସ୍ଥିର ହୋଇଗଲା; ଲୋକେ ଯେତେବେଳେ ଶୁଣିଲେ ଯେ ମେୟର ହେଞ୍ଚାର୍ଡ଼ ନାବିକ ନ୍ୟୁସନ୍‌ଙ୍କର ବିଧବା ପତ୍ନୀଙ୍କୁ ବିବାହ କରିବାକୁ ସ୍ଥିର କରିଛନ୍ତି; ସେତେବେଳେ କାହାର କିଛି ସନ୍ଦେହ କରିବାର ଅବକାଶ ରହିଲା ନାହିଁ । କେହି ଜାଣିପାରିଲେନାହିଁ ଯେ, ଏ ବିବାହ ପଛରେ ହେଞ୍ଚାର୍ଡ଼ଙ୍କର ଉଦ୍ଦେଶ୍ୟ ରହିଥିଲା— ପରିତ୍ୟକ୍ତା ପତ୍ନୀ ସୁସାନ୍‌ଙ୍କ ପ୍ରତି କର୍ତ୍ତବ୍ୟ ପାଳନ କରିବା ସଙ୍ଗେ ସଙ୍ଗେ ଝିଅ ଏଲିଜାବେଥ୍ ଜେନ୍‌କୁ ଆଣି ସୁଖ ସମୃଦ୍ଧି ମଧ୍ୟରେ ଥଇଥାନ କରାଇବା ଅବଶ୍ୟ ଡୋନାଲ୍‌ଡ ଫର୍‌ଫ୍ରେ ଏସବୁର ରହସ୍ୟ ଜାଣିଥିଲେ; କିନ୍ତୁ ସେ ତ ଏସବୁ ଅନ୍ୟ ଆଗରେ ପ୍ରକାଶ କରିବା ଲୋକ ନୁହନ୍ତି ।

ସ୍ୱାମୀଗୃହରେ ପାଦ ଦେଉ ଦେଉ ସୁସାନ୍‌ଙ୍କ ଜୀବନରେ ନବବସନ୍ତର ଆବିର୍ଭାବ ହେଇଗଲା । ପୂର୍ବରୁ ସେ କୌଣସି ଦିନ ସୁଖଶାନ୍ତି ବୋଲି ଜାଣିନଥିଲେ । ଆନନ୍ଦ ଉତ୍ସବ ଭିତରେ ହେଞ୍ଚାର୍ଡ଼ଙ୍କ ପରିବାରରେ ସମସ୍ତଙ୍କ ମୁହଁରେ ହସଖୁସିର ଛାପ ଲାଗିଗଲା । ତେଣେ ଫରଫ୍ରେଙ୍କ ପରିଚାଳନାରେ ହେଞ୍ଚାର୍ଡ଼ଙ୍କ ବ୍ୟବସାୟରେ ବି ଅଭୂତପୂର୍ବ ଉନ୍ନତି ଦେଖାଦେଲା । ମାଲିକ ଓ ମେନେଜରଙ୍କ ମଧ୍ୟରେ ଜମିଉଠୁଥିଲା ପ୍ରଗାଢ଼ ସ୍ନେହ ଓ ଶ୍ରଦ୍ଧା । ନିଃସଙ୍ଗ ହେଞ୍ଚାର୍ଡ଼ଙ୍କ ପାଖରେ ଫରଫ୍ରେ ଥିଲେ ଅନ୍ତରତମ ବନ୍ଧୁ । ସେ ତାଙ୍କୁ ନିଜର ସାନଭାଇ ପରି ସ୍ନେହ କରୁଥିଲେ । କିନ୍ତୁ ଘନିଷ୍ଠ ବନ୍ଧୁତ୍ୱର ମୂଳଦୁଆ ଟଳିଦେଇ

ତାକୁ ଧୂଳିରେ ମିଶାଇଦେବା ଲାଗି ବେଳେ ବେଳେ ଯେଉଁ ବିଷବୃକ୍ଷ ଉଠିଯାଏ, ଏ ଭିତରେ ସେ ବିଷବୃକ୍ଷର ବୀଜ ବପନ ହୋଇଗଲା ।

ଦିନକର କଥା । ସନ୍ଧ୍ୟା ଛଅଟା ହେବ । ଏଲିଜାବେଥ୍ ଜେନ୍ ଝରକା ଦେଇ ଗୋଦାମଆଡ଼େ ଚାହିଁଛି । ଦେଖିଲା ଫାଟକ ପାଖରେ ହେଞ୍ଚାର୍ଡ଼ ଓ ଫର୍‌ଫ୍ରେ ଠିଆହୋଇ କ'ଣ ଆଲୋଚନା କରୁଛନ୍ତି । ଚାକରମାନେ ନିଜ ନିଜ କାମଦାମ ସାରି ସେମାନଙ୍କ ପାଖଦେଇ ଘରକୁ ଫେରୁଛନ୍ତି । ସବୁ ଚାକରଙ୍କ ପଛରେ ଗୋଟାଏ ଅନ୍ତଲାପେଟା ଚାକର ଯାଉଛି । ହେଞ୍ଚାର୍ଡ଼ ତାକୁ ଡାକପକାଇଲେ, ''କିରେ ଆବେଲ୍ ହ୍ୱିଟିଲ୍, ଏଠାକୁ ଆସିଲୁ ।''

ପେଟା ଚାକରଟାର ବୟସ ଊଣିଶି କୋଡ଼ିଏରୁ ବେଶି ହେବନାହିଁ; କିନ୍ତୁ ତା' ତଳପାଟିଟା ଖୁବ୍ ଛୋଟ ହୋଇଥିବାରୁ ଦୂରରୁ ଦେଖାଯାଉଥାଏ ସତେ ଯେପରି ତା' ପାଟିଟା ସବୁବେଳେ ଖୋଲା ରହିଛି । ସେ ଆସି କରପତ୍ର ଯୋଡ଼ି ଠିଆହେବାମାତ୍ରେ ହେଞ୍ଚାର୍ଡ଼ କହିଲେ, ''ଦେଖୁଛି ତୁ କୌଣସି ଦିନ ଠିକ୍ ସମୟରେ କାମକୁ ଆସୁନାହୁଁ । ତତେ ସାବଧାନ କରିଦେଉଛି, କାଲି ସକାଳେ ଯଦି ଠିକ୍ ସମୟରେ କାମକୁ ନଆସୁ, ତେବେ ଅବସ୍ଥା ଭଲ ହେବ ନାହିଁ, ଯା ।''

ହେଞ୍ଚାର୍ଡ଼ ଯେ କିଛି ଅକାରଣରେ ଲୋକଟାକୁ ଏପରି ଭର୍ତ୍ସନା କଲେ, ତା' ନୁହେଁ । ଆବେଲ୍ ପେଟାଟା ଭାରି ନିଦୁଆ; ସକାଳୁ ଜମା ଉଠିପାରେ ନାହିଁ । ତେଣୁ ସବୁଦିନ କାମକୁ ଆସିବାବେଳକୁ ତା'ର ଡେରି । ଦିନାକେତେ ଗାଳିଖାଇବା ପରେ ସକାଳୁ ଉଠିବାଲାଗି ସେ ଗୋଟାଏ ଉପାୟ କରିଥାଏ । ପ୍ରତିଦିନ ରାତିରେ ଶୋଇବା ପୂର୍ବରୁ ତା' ଗୋଡ଼ର ବୁଢ଼ାଆଙ୍ଗୁଠିରେ ଗୋଟାଏ ଦଉଡ଼ି ବାନ୍ଧିଦେଇ ଦଉଡ଼ିର ଆର ମୁଣ୍ଡଟା ଝରକା ବାହାରେ ଝୁଲାଇଦେଇଥାଏ । ସାଙ୍ଗମାନଙ୍କୁ କହିଦେଇଥାଏ, ସେମାନେ ସକାଳୁ କାମକୁ ଗଲାବେଳେ ଦଉଡ଼ିଟାକୁ ଜୋର୍‌ରେ ଟାଣିଦେବେ; ଫଳରେ ତା' ନିଦ ଭାଙ୍ଗିଯିବ । ସାଙ୍ଗମାନେ ତା'ର ଅନୁରୋଧଟା ରଖିଲେ ସତ; କିନ୍ତୁ ଦୈବାତ୍ ଯେଉଁଦିନ ସେମାନେ ଦଉଡ଼ି ଟାଣିବାକୁ ଭୁଲିଯାଆନ୍ତି, ସେଦିନ ନିଦୁଆ ଆବେଲ୍ ଆଉ ଉଠିପାରେନାହିଁ ଏବଂ ଏପରି ଭୁଲଭଟକା ଗତ କିଛି ଦିନ ହେଲା ଲାଗିରହିଥିଲା; ଫଳରେ ଆବେଲ୍ ପ୍ରତିଦିନ ଘଣ୍ଟାଏ ଦେଢ଼ଘଣ୍ଟା ଡେରିରେ କାମକୁ ଆସୁଥିଲା । ସୁତରାଂ ହେଞ୍ଚାର୍ଡ଼ ତାକୁ ଏପରି ତାଗିଦ୍ କରିଦେଲେ ।

କିନ୍ତୁ ତା' ପରଦିନ ସକାଳ ଛ'ଟା ବେଳକୁ ଆବଲ୍ ହ୍ୱିଟିଲର କାମ ପାଖରେ ଦେଖା-ଦର୍ଶନ ମିଳିଲାନାହିଁ । ଠିକ୍ ସାଢ଼େ ଛଅଟା ବେଳକୁ କାମ ତଦାରଖ କରିବା ଲାଗି ହେଞ୍ଚାର୍ଡ଼ ଚାଲିଆସିଲେ । ହ୍ୱିଟିଲ୍‌ର କାମ ହେଲା ସେ ଅନ୍ୟ ଜଣେ ଚାକର ସହିତ ମିଶି ଗାଡ଼ିରେ ଗହମ ବସ୍ତା ଲଦି ଗାଣିନେଇ ଅନ୍ୟତ୍ର ରଖିବ । ସାଥୀ ଚାକର ଜଣକ ଆବଲ୍ ହ୍ୱିଟିଲ୍‌ପାଇଁ ଜଗି ଜଗି ଶେଷରେ ତା' ଘରକୁ ଯାଇ ତାକୁ ନିଦରୁ ଉଠାଇବାକୁ ବସିଛି, ଏତିକିବେଳେ ସେଠାରେ ହେଞ୍ଚାର୍ଡ଼ ପହଞ୍ଚିଯାଇ ପାଟିକରି ଉଠିଲେ, ''ଆବଲ୍ ହ୍ୱିଟିଲ୍ କାହିଁ ?... ଆସିନାହିଁ ? ଏଁ ଏତେ ତାଗିଦ୍ ସତ୍ତ୍ୱେ ତା'ର ଚେତା ପଶିଲା ନାହିଁ ? ଦେଉଛି ଆଜି; ଆଜି ସାବାଡ଼୍ କରିଦେଉଛି ।''

ପରମୁହୂର୍ତ୍ତରେ ମେୟର୍ ହେଞ୍ଚାର୍ଡ଼ ସିଧା ଚାଲିଗଲେ ଚାକରମାନେ ରହୁଥିବା ଖଞ୍ଜାକୁ । ଆବଲ୍‌ର କୋଠରିରେ ପଶିଯାଇ ସେ ଏପରି ଗୋଟାଏ ଗର୍ଜନ କରିଉଠିଲେ ଯେ, ଆବଲ୍ ଧଡ଼ପଡ଼ ହୋଇ ଉଠିପଡ଼ିଲା । ସେ ପୋଷାକ ପିନ୍ଧିବାକୁ ଯାଉଛି, ହେଞ୍ଚାର୍ଡ଼ ପୁଣି ,ପାଟିକରିଉଠିଲେ, ''ହତଭାଗା, ଆହୁରି ବେଶ ହେଉଛୁ ! ସେମିତି ଦରଲଙ୍ଗଳା ହୋଇ ଚାଲ, ଚାଲ ଅବି ଗୋଦାମକୁ; ମୁଁ ଆଜି ତତେ ଠିକଣା ପାଠ ଶିଖାଉଛି ।''

ଆବଲ୍ ରାତିପିନ୍ଧା ଛୋଟ ଜଙ୍ଘିଆଖଣ୍ଡକ ପିନ୍ଧିଥାଏ; କୌଣସି ପ୍ରକାରେ କୋଟ୍‌ଟା ଗଳାଇପକାଇଲା ଓ ତଳ ପାହାଚରୁ ଜୋତାହଳକ ପିନ୍ଧି ଗୋଦାମକୁ ଦୌଡ଼ିଲା । ରାଗଜରଜର ହୋଇ ତା' ପଛରେ ମାଡ଼ିଚାଲିଲେ ହେଞ୍ଚାର୍ଡ଼ । ଠିକ୍ ସେତିକିବେଳକୁ ତାଙ୍କ ସହିତ ଦେଖାକରିବା ଲାଗି ଫର୍‌ଫ୍ରେ ତାଙ୍କ ଘରକୁ ଯାଇଥାନ୍ତି । ମାଲିକଙ୍କୁ ଘରେ ଦେଖିବାକୁନପାଇ ସେ ଗୋଦାମ ଅଗଣା ଆଡ଼କୁ ଆସୁ ଆସୁ ଦେଖିଲେ ଆବଲ୍ ହ୍ୱିଟିଲ୍ ଦୌଡ଼ିଛି ଓ ତା' ପଛରେ ଧଳା ହୋଇ କ'ଣ ଗୋଟାଏ ଝୁଲୁଛି । ପାଖକୁ ଯାଇ ଦେଖନ୍ତି ତ ଧଳା ଜିନିଷଟା ଆବଲ୍‌ର ରାତିପିନ୍ଧା ଢିଲା ଜାମାଟି ବ୍ୟତୀତ ଅନ୍ୟ କିଛି ନୁହେଁ । ସେ ପାଇଜାମା ପିନ୍ଧିନାହିଁ । ଫର୍‌ଫ୍ରେ ସଙ୍ଗେ ସଙ୍ଗେ ଚିଡ଼ିଉଠିଲେ, ''ଆରେ ଅଳସୁଆ, ପାଇଜାମାଟା ପିନ୍ଧିବାକୁ ବି ବେଳ ପାଇଲୁନାହିଁ ଯେ ଏ ଶୀତଟାରେ ଫୁଙ୍ଗୁଳା ହୋଇ କାମକୁ ଆସିଛୁ ? ଯା, ଜଲ୍‌ଦି ଯାଇ ମଣିଷଙ୍କ ପରି ଲୁଗାପଟା ପିନ୍ଧି କାମକୁ ଆସ ।''

ସେତେବେଳକୁ ହେଞ୍ଚାର୍ଡ଼ ଆହୁରି ସେଠାରେ ପହଞ୍ଚିନଥାନ୍ତି । ଆବଲ୍ ଭୟରେ ଥରିଥରି କହିଲା, ''କ୍ଷମା କରନ୍ତୁ ବାବୁ, ମତେ ଆଉ ସେ ଅଡୁଆକୁ ପଠାନ୍ତୁନାହିଁ । ବାବୁଙ୍କ ହୁକୁମ... ।''

''ଆରେ ରଖ ତୋ ବାବୁଙ୍କ ହୁକୁମ ! ମଣିଷ ମଣିଷଭଳି କାମ କରିବା ଉଚିତ । ଶୀତ ଲାଗି ସର୍ଦ୍ଦି ଧରିବା ପୂର୍ବରୁ ଶୀଘ୍ର ଯାଇ ପାଇଜାମା ପିନ୍ଧି ଆସ କହୁଛି ।''

ସେତିକିବେଳକୁ ହେଞ୍ଚାର୍ଡ଼ ଆସି ସେଠାରେ ପହଞ୍ଚିଗଲେ । ଆବଲ୍ ବସାକୁ ଫେରୁଛି ଦେଖି ସେ ପାଟିକରିଉଠିଲେ, ''ଆରେ ରହ ସେଇଠି । କିଏ ସେ ତାକୁ ବସାକୁ ପଠାଇଲା ଶୁଣେ !''

ଚାକରମାନେ ଫର୍‌ଫ୍ରେଙ୍କ ମୁହଁକୁ ଚାହିଁବାକୁ ଲାଗିଲେ । ଫର୍‌ଫ୍ରେ ଦୃଢ଼କଣ୍ଠରେ କହିଲେ, ''ମୁଁ ପଠେଇଲି; ଏ ପରିହାସଗୁଡ଼ାକ ସୁନ୍ଦର ହେଉନାହିଁ ।''

''ମୁଁ କହେ ମୋଟେ ଅସୁନ୍ଦର ହୋଇନାହିଁ । ତୁ ତୋ କାମ ଉପରକୁ ଚାଲିଯା ହ୍ୱିଟିଲ୍ !''

ଫର୍‌ଫ୍ରେ ରୁକ୍ଷଭାବରେ କହିଲେ; ''ନା, ମୁଁ ଏଠାରେ ମ୍ୟାନେଜର ହୋଇ ରହିବାଯାଏ ସେ ଏ ଅବସ୍ଥାରେ କାମକୁ ଯାଇପାରିବନାହିଁ । ଆଜି ହୁଏତ ସେ ଘରକୁ ଯାଇ ଜାମାପଟା ପିନ୍ଧି କାମକୁ ଆସିବ, ନଚେତ୍ ମୁଁ ଗୋଦାମ ଛାଡ଼ି ଚାଲିଯିବି ।''

ହେଞ୍ଚାର୍ଡ଼ ଆଖିତରାଟି ଚାହିଁବାକୁ ଲାଗିଲେ । ତାଙ୍କ ମୁହଁଟା କ୍ରୋଧରେ ଲାଲପଡ଼ିଗଲା । ସେ ଆଉ କିଛି ନକହି ଅଟକିଗଲେ ସତ; କିନ୍ତୁ ଦିହେଁ ଦିହିଁକୁ ଚାହିଁରହିବା ପରେ ଫର୍‌ଫ୍ରେ ଟିକିଏ ପାଖକୁ ଆସି ଶାନ୍ତଭାବରେ ପଚାରିଲେ, ''ଆପଣ ଏସବୁ କ'ଣ କରୁଛନ୍ତି ? ଆପଣଙ୍କ ପରି ଲୋକଠାରୁ ଆହୁରି ଭଲ ବ୍ୟବହାର ଆଶା କରାଯାଏ; ଏଗୁଡ଼ାକ ଶୋଭନୀୟ ନୁହେଁ ।''

ପୂର୍ବପରି କ୍ରୋଧଜରଜର ହୋଇ ହେଞ୍ଚାର୍ଡ଼ କହିଲେ, ''ମୁଁ ଏପରି କିଛି କରିବାକୁ ଚାହେଁ, ଯାହାକି ସେ କୌଣସି ଦିନ ଭୁଲିପାରିବନାହିଁ ।'' ତା'ପରେ ପରେ କ୍ଷୁବ୍ଧ ଓ ଅପମାନିତ ହୋଇ ସେ ଅଭିଯୋଗ କରିବା ଆରମ୍ଭ କରିଦେଲେ, ''ଚାକରଗୁଡ଼ାକ ଆଗରେ ତୁମେ ମୋତେ ଏଭଳି ଭାଷାରେ କଥା କହିପାରିଲ, ଫରଫ୍ରେ ? ମନୋଭାବଟାକୁ ଏକାନ୍ତରେ ପ୍ରକାଶ କରିବା ଲାଗି ଟିକିଏ ଅପେକ୍ଷା ବି କରିପାରିଲନାହିଁ ?'' —ଏହିତକ ପଚାରିଦେଇ ସେ ମୁହଁବୁଲାଇ ଅଫିସ୍ ଭିତରକୁ ଚାଲିଗଲେ ।

ସେଦିନ ଚାକରମାନଙ୍କ ସହିତ କଥାଭାଷା କରୁ କରୁ ଫର୍‌ଫ୍ରେ ଜାଣିବାକୁ ପାଇଲେ ଯେ ହେଞ୍ଚାର୍ଡ଼ ଆବଲ୍‌କୁ ବହୁ ଭାବରେ ସାହାଯ୍ୟ କରିଛନ୍ତି । ଗତ ବର୍ଷ

ଶୀତବେଳେ ସେ ତା' ମାଆକୁ ଖୋରାକପତ୍ର ଏବଂ ଜାଳେଣି କୋଇଲା ଯୋଗାଇଦେଇଥିଲେ । ହେଞ୍ଚାର୍ଡ଼ଙ୍କର ଏ ପ୍ରକାର ବଦାନ୍ୟତା ବିଷୟ ଶୁଣି ଫର୍‌ଫ୍ରେଙ୍କ ମନଟା ନରମ ହୋଇଗଲା । ସେ ମନେ ମନେ ହେଞ୍ଚାର୍ଡ଼ଙ୍କୁ ପ୍ରଶଂସା କରିବାକୁ ଲାଗିଲେ । କିନ୍ତୁ ହେଞ୍ଚାର୍ଡ଼ଙ୍କ କ୍ରୋଧ ଶାନ୍ତ ହେଲାନାହିଁ । କାହାକୁ କିଛି ନକହି ସେ ଗୁମ୍ ହୋଇ ବସିରହିଲେ । ସେଦିନ ଉପରବେଳା ଜଣେ ଚାକର ଆସି ଗୋଦାମର ଉପର ତାଲାରେ ଗହମ ରଖିବା ବିଷୟ ପଚାରୁ ପଚାରୁ ସେ ଖପ୍‌ପା ହୋଇ କହିଲେ, ''ଯା, ଯା, ସେହି ଫର୍‌ଫ୍ରେଙ୍କୁ ପଚାର; ମୁଁ ଏଠି କିଏ ସେ ? ସେ ହିଁ ଏଠି ମାଲିକ ।''

ଏମିତି ସବୁ ଛୋଟ ଛୋଟ ଘଟଣାକୁ ବଡ଼ କରି ଦେଖି ଦେଖି ସେ କ୍ରମଶଃ ଉପଲବ୍ଧି କଲେ ଯେ ସମସ୍ତେ ଫର୍‌ଫ୍ରେଙ୍କୁ ହିଁ ତାଙ୍କ ଅପେକ୍ଷା ଅଧିକ ବୁଦ୍ଧିମାନ୍ ବୋଲି ମନେକରୁଛନ୍ତି । ସେମାନେ ତାଙ୍କୁ କିଛି ନପଚାରି ଫର୍‌ଫ୍ରେଙ୍କର ମତାମତ ଲୋଡ଼ୁଛନ୍ତି । ଦିନକର କଥା– ପାଖ ଗାଆଁର ଜଣେ ଚାଷୀ ମରିଯାଇଥାନ୍ତି; ତାଙ୍କ ଝିଅ ଘରଖର୍ଚ୍ଚ ଲାଗି କିଛି ଗହମ ଓ କୁଟା ବିକ୍ରି କରିବାର ପ୍ରସ୍ତାବ ଦେଇ ଫର୍‌ଫ୍ରେଙ୍କ ପାଖକୁ ଗୋଟିଏ ପିଲା ହାତରେ ଖବର ପଠାଇଲା । ପିଲାଟି ଗୋଦାମକୁ ଆସି ଫର୍‌ଫ୍ରେଙ୍କୁ ନପାଇ ହେଞ୍ଚାର୍ଡ଼ଙ୍କୁ ଭେଟିଲା । ତା' କଥା ଶୁଣି ହେଞ୍ଚାର୍ଡ଼ କହିଲେ, ''ଠିକ୍ ଅଛି; ମୁଁ କାଲି ସେଠିକି ଯିବି ।''

ପିଲାଟି ପଚାରିଲା, ''କିନ୍ତୁ ଆଜ୍ଞା, ଫର୍‌ଫ୍ରେ ସାହେବ ଆସିବେଟି ?''

ଚିଡ଼ିଉଠି ହେଞ୍ଚାର୍ଡ଼ ପଚାରିଲେ, ''ଲୋକେ ସବୁବେଳେ କାହିଁକି ଫର୍‌ଫ୍ରେ ସାହେବ୍‌ଙ୍କୁ ଖୋଜୁଛନ୍ତି, ଶୁଣେ ?''

ସରଳମତି ବାଳକଟି କହିଲା, ''ଲୋକେ ବୋଧହୁଏ ଫର୍‌ଫ୍ରେ ସାହେବ୍‌ଙ୍କୁ ବେଶି ଭଲପାଆନ୍ତି । ମୁଁ ପରା ଶୁଣିଛି, ଲୋକେ କହନ୍ତି, ସେ କାଳେ ଆପଣଙ୍କ ଭଳି ଚିଡ଼ା ନୁହନ୍ତି । ଜଣେ ପରା କହୁଥିଲା, ଫର୍‌ଫ୍ରେ ସାହେବ ମାଲିକ ହୋଇଥିଲେ ଚାଷୀଙ୍କର ଆଉ ଚିନ୍ତା ନଥାନ୍ତା ।''

ହେଞ୍ଚାର୍ଡ଼ ରାଗିଯାଇ କହିଲେ, ''ଚୁପ୍ କର ! ବାଜେ ବକ୍ ବକ୍ ହୁଅନା । ଯା ପଳା, ଗାଆଁକୁ ପଳା; କହିଦେବୁ ଦାମ୍ କଷିବା ଲାଗି କାଲିକି ମୁଁ ନିଜେ ଆସିବି ।''

କଥାରେ ଅଛି 'ଛିଦ୍ର ପାଇଲେ ଅନର୍ଥ ବଢ଼ିଯାଏ' । ଛୋଟ ଛୋଟ ଘଟଣାକୁ କେନ୍ଦ୍ର କରି ଫର୍‌ଫ୍ରେଙ୍କ ପ୍ରତି ହେଞ୍ଚାର୍ଡ଼ଙ୍କ ହୃଦୟରେ ଗୋଟାଏ ଈର୍ଷାର ନିଆଁ ଜୁହୁଳିବାକୁ ଲାଗିଲା । ଫର୍‌ଫ୍ରେଙ୍କ ପ୍ରତି ସେ ପୂର୍ବର ଶ୍ରଦ୍ଧା ଆଉ ରହିଲାନାହିଁ ।

ପୂର୍ବର ସେ ମଧୁର ବ୍ୟବହାର ବର୍ତ୍ତମାନ ଉପରଦେଖାଣିଆ ଭଦ୍ରାମିରେ ପର୍ଯ୍ୟବସିତ ହୋଇଗଲା । ଏହିପରି ତିକ୍ତତା ଭିତରେ ଦିନ ବିତିଚାଲିଥାଏ । ଏ ଭିତରେ ରାଜ୍ୟସାରା ଗୋଟାଏ ଜାତୀୟ ଉତ୍ସବ ଘୋଷଣା କରାଗଲା । ପ୍ରସ୍ତାବ ଦିଆଗଲା ଯେ ଜନସାଧାରଣ କ୍ରୀଡ଼ା-କୌତୁକ ଓ ଆନନ୍ଦ କୋଳାହଳ ମଧ୍ୟରେ ଜାତୀୟ ଉତ୍ସବଟି ପାଳନ କରନ୍ତୁ । କାଷ୍ଟରବ୍ରିଜ୍‌ର ଲୋକେ ତ ସବୁ କାମକୁ ପଛୁଆ; ଉତ୍ସବ ପାଳନପାଇଁ ବା ଯଥେଷ୍ଟ ପୂର୍ବରୁ ପ୍ରସ୍ତୁତ ହୁଅନ୍ତେ କିପରି ? ଯାହାହେଉ, ଉତ୍ସବର ଅଳ୍ପ କିଛି ଦିନ ପୂର୍ବରୁ ଦିନେ ଫର୍‌ଫ୍ରେ ଆସି ହେଞ୍ଚାର୍ଡ଼ଙ୍କୁ ଉତ୍ସବ ବିଷୟରେ ଜଣାଇ ସେ ଓ ଅନ୍ୟ କେତେଜଣ ଯୁବକ ବନ୍ଧୁ ମିଶି ପ୍ରସ୍ତୁତ କରୁଥିବା ଏକ ମନୋରଞ୍ଜନ କାର୍ଯ୍ୟକ୍ରମ ଲାଗି କେତେ ଖଣ୍ଡ ପାଲ ନେବାକୁ ଅନୁମତି ମାଗିଲେ ।

''ଯେତେ ଇଚ୍ଛା ସେତେ ପାଲ ନିଅ''—କହିଦେଇ ହେଞ୍ଚାର୍ଡ଼ ନିଜେ ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମର ଯୋଜନା କରିବସିଲେ । ସେ ଭାବିଲେ ଜାତୀୟ ଉତ୍ସବ ପରି ଗୋଟାଏ ଦିନରେ ସେ କିଛି ନକରିବା ପ୍ରକୃତରେ ଅନ୍ୟାୟ ହେବ; ଏଭଳି କାମରେ ମେୟର ଅଗ୍ରଣୀ ହେବା କଥା । ଗାଁଗହଳର ଲୋକଙ୍କ ରୁଚି ଅନୁଯାୟୀ କେତେକ ମନୋରଞ୍ଜକ କ୍ରୀଡ଼ା-କୌତୁକର ଆୟୋଜନ କରିବାକୁ ସେ ବରାଦ ଦେଇଦେଲେ । ଫର୍‌ଫ୍ରେ ଓ ତାଙ୍କ ବନ୍ଧୁମାନେ ଯେ କି କାର୍ଯ୍ୟକ୍ରମ ପ୍ରସ୍ତୁତ କରୁଛନ୍ତି, ସେ ବିଷୟରେ ସେ ମୁଣ୍ଡହିଁ ଖେଳାଇଲେନାହିଁ ।

ସହର ଉପକଣ୍ଠରେ ସୁନ୍ଦର ଘାସଲତାପୂର୍ଣ୍ଣ ଗୋଟିଏ ଛୋଟ ପାହାଡ଼ ଥାଏ । ପାହାଡ଼ କରେ କରେ ବୋହିଯାଉଥାଏ ଗୋଟିଏ ଛୋଟ ନଈ । ଚାରିଆଡ଼େ ଖୋଲାପଡ଼ିଆ । ପାହାଡ଼ଟି ଉପରୁ ଚାରିଆଡ଼ର ପ୍ରାକୃତିକ ଦୃଶ୍ୟ ବଡ଼ ସୁନ୍ଦର ଦେଖାଯାଏ । ହେଞ୍ଚାର୍ଡ଼ ଠିକ୍ କଲେ, ତାଙ୍କର ମନୋରଞ୍ଜନ କାର୍ଯ୍ୟକ୍ରମ ସବୁ ସେହି ପାହାଡ଼ ତଳ ନଈକୂଳରେ ହେବ । ସେଠାରେ ଜାତୀୟ ଉତ୍ସବ ଦିନ ନାନାପ୍ରକାର ଖେଳକୁଦର ଆୟୋଜନ ହେଉଛି ବୋଲି ଚାରିଆଡ଼େ ପ୍ରଚାରିତ ହୋଇଗଲା । ମେୟର ଲୋକ ଲଗାଇ କାମ ଆରମ୍ଭ କରିଦେଲେ । କେତେଗୁଡ଼ାଏ ଚିକ୍‌କଣ ଖୁଣ୍ଟ ପୋତାଯାଇ ସେଥିରେ ତେଲ ବୋଳିଦିଆଗଲା ଓ ଖୁଣ୍ଟଗୁଡ଼ାକ ଉପରେ ପୁଡ଼ିଆ କରି ଛେନାକେକ୍ ବନ୍ଧାଗଲା । ଯେଉଁ ଲୋକ ଉପରକୁ ଚଢ଼ିପାରିବ, ସେ ଛେନାକେକ୍‌ତକ ପାଇବ । ନଈ ଉପରେ ଗୋଟାଏ ଖସଡ଼ା ବାଉଁଶ ପକାଇ ଆଉ ମୁଣ୍ଡରେ ଗୋଟାଏ ଘୁଷୁରି ବାନ୍ଧିଦିଆଗଲା । କଥା ରହିଲା,

ଯେଉଁ ଲୋକ ସେ ବାଉଁଶ ଉପରେ ଚାଲି ନଦୀ ପାର ହୋଇପାରିବ, ସେ ଘୁଷୁରିଟା ପୁରସ୍କାର ପାଇବ । ଏସବୁ ଛଡ଼ା ଗଧଦଉଡ଼, କୁସ୍ତି, ହର୍ଡ୍‌ଲ ଡିଆଁ, ରଣପା ପ୍ରଭୃତି ଗାଉଁଲିଆ ଖେଳକୁଦର ବି ବ୍ୟବସ୍ଥା କରାଗଲା । ପୁଣି ବିଭିନ୍ନ ନାଚଗୀତ ଭିତରେ ଗୋଟିଏ ଭୋଜି ସଭାରେ ଯୋଗ ଦେବାଲାଗି ବି ସହରର ବିଶିଷ୍ଟ ଲୋକଙ୍କୁ ନିମନ୍ତ୍ରଣ କରାଗଲା ।

ଏସବୁ କାମ ତଦାରଖପାଇଁ ପାହାଡ଼ ପାଖକୁ ଗଲାବେଳେ ମେୟର ଦେଖନ୍ତି, ସହରତଳ ପଶ୍ଚିମ ଡୋଟା ଭିତରେ ଫର୍‌ଫ୍ରେ ଓ ତାଙ୍କ ବନ୍ଧୁମାନେ ଛୋଟ ବଡ଼ ଗୁଡ଼ାଏ ପାଲ ଟାଙ୍ଗୁଛନ୍ତି । ଗଛ ଡାଳମାନଙ୍କରେ ଝୁଲୁଥିବା ନାଲି ନେଳୀ କନା କେତେଖଣ୍ଡ ବ୍ୟତୀତ ସେଠାରେ ବିଶେଷ କିଛି ଆକର୍ଷଣୀୟ ଜିନିଷ ନଦେଖି ହେଞ୍ଚାର୍ଡ଼ ମନେ ମନେ ଆତ୍ମପ୍ରସାଦ ଲାଭକଲେ–"ମୋ ଆୟୋଜନ ତୁଳନାରେ ଏଗୁଡ଼ା କିଛି ନୁହେଁ ।"

ଉତ୍ସବ ଦିନ ଉପସ୍ଥିତ ହୋଇଗଲା । କିନ୍ତୁ ଦୁର୍ଯୋଗକୁ ସପ୍ତାହେ ଧରି ନିର୍ମଳ ଥିବା ଆକାଶଟାରେ ସେଦିନ ସକାଳୁ ଦେଖାଗଲା ଖଣ୍ଡ ଖଣ୍ଡ କଳାମେଘ ଭାସିବୁଲୁଛି । ଦିନ ବାରଟା ବେଳକୁ ବର୍ଷା ଆରମ୍ଭ ହୋଇଗଲା । ତିନିଟା ବେଳକୁ ଏପରି ବର୍ଷା କଟାଉଥାଏ ଯେ, ହେଞ୍ଚାର୍ଡ଼ ବାଧ ହୋଇ କହିଲେ, "ଏ ପାଣିକାଦୁଅରେ ଆଉ କୌଣସି ମଜା କରିହେବନାହିଁ ।" ବର୍ଷାରେ ତେଲିଆ ଖୁଣ୍ଟ ଉପରର ଛେନା ପୁଡ଼ିଆରୁ ଧଳା ପାଣି ଝରିବାକୁ ଲାଗିଲା, ଘୁଷୁରିଟା ତେଣେ ଶୀତକାକରରେ ଜୁଡୁବୁଡୁ ହୋଇ ଥରୁଥାଏ । ଶେଷକୁ ଏପରି ଗୋଟାଏ ଭୀଷଣ ଝଡ଼ ହେଲା ଯେ ଟାହାଭୋଜିପାଇଁ ଟଣାଯାଇଥିବା ତମ୍ବୁଟା ମଡ଼ମାଡ଼ ହୋଇ ଭାଙ୍ଗିପଡ଼ିଲା । ତମ୍ବୁ ତଳେ ଆଶ୍ରୟ ନେଇଥିବା ଲୋକତକ ପେଟେଇ, ହାମୁଡ଼େଇ ପ୍ରାଣବିକଳରେ ବାହାରି ପଳେଇଲେ ।

ଯାହାହେଉ, ଛଅଟା ବେଳକୁ ବର୍ଷା ବନ୍ଦ ହୋଇ ଆକାଶ ଫର୍ଚ୍ଚା ହୋଇଗଲା । ମନେହେଲା ଏଥର କିଛିଟା କାର୍ଯ୍ୟକ୍ରମ କରାଯାଇପାରିବ । କୁଲିମାନେ ଲାଗି ଟାହା ତମ୍ବୁଟା ପୁଣି ଟାଙ୍ଗିଦେଲେ । ହୁକୁମ ପାଇବାମାତ୍ରେ ବ୍ୟାଣ୍ଡବାଜାବାଲାଏ ବାଜା ଆରମ୍ଭ କରିଦେଲେ । ନାଚ-ଗୀତ ପାଇଁ ଖଣ୍ଡେ ଜାଗା ସଫା କରିଦିଆଗଲା । କିନ୍ତୁ ଅଧଘଣ୍ଟାଏ ଅପେକ୍ଷା କରିବା ପରେ ବି ଯେତେବେଳେ ଦେଖାଗଲା ଯେ ନାଚରେ ଅଂଶ ଗ୍ରହଣ କରିବାଲାଗି ମାତ୍ର ଜଣେ ଭଦ୍ରଲୋକ ଓ ଜଣେ ଭଦ୍ରମହିଳା ଠିଆ ହୋଇଛନ୍ତି, ସେତେବେଳେ ନିରାଶ ହୋଇ ହେଞ୍ଚାର୍ଡ଼

କହିଲେ; ''କାହିଁ, ଲୋକେ ଗଲେ କୁଆଡ଼େ ! ଦୋକାନ ବଜାର ଆଜି ସବୁ ବନ୍ଦ, ତଥାପି ଆସୁନାହାନ୍ତି କାହିଁକି ?''

ଜଣେ କେହି କହିଲା, ''ଆଜ୍ଞା, ଲୋକେସବୁ ପଶ୍ଚିମା ତୋଟାଠେଇଁ ଫର୍‌ଫ୍ରେଙ୍କ ମେଳା ପାଖରେ ଜମିଛନ୍ତି ।''

କ୍ଷୁବ୍ଧ ହୋଇ ହେଞ୍ଚାର୍ଡ଼ କାର୍ଯ୍ୟକ୍ରମ ସବୁ ବନ୍ଦ କରିଦେଲେ ଏବଂ ହୁକୁମ ଦେଇଦେଲେ ଯେ ଖିଆ ପିଆ ଯାହା ସବୁ ହୋଇଛି, ସବୁ ଭିକାରିମାନଙ୍କୁ ବାଣ୍ଟି ଦିଆଯିବ । ଟାହୁଁ ଟାହୁଁ କେତେଟା ଖୁଣ୍ଟ, କେତେ ଯୋଡ଼ା ହର୍ଡଲ ଓ ଥୁଣ୍ଟା ତମ୍ବୁଟା ବ୍ୟତୀତ ସେଠାକାର ସବୁ ଆୟୋଜନ କେଉଁଆଡ଼େ ଫସରଫାଟିଗଲା ।

ମେୟର ସହରକୁ ଫେରିବା ବାଟରେ ପଶ୍ଚିମା ତୋଟା ପଡ଼ିଲା । ନାଚ-ଗୀତର କୋଳାହଳରେ ସ୍ଥାନଟା ଫାଟିପଡୁଥାଏ । ସେ ଦେଖିଲେ ବିନା ଖୁଣ୍ଟ, ବିନା ଦଉଡ଼ିରେ ଗଛଡାଳମାନଙ୍କୁ ଧରି ଏକ ବିରାଟ ତମ୍ବୁ ଟଙ୍ଗାଯାଇଛି । ପବନ ବହୁଥିବା ଦିଗଟାକୁ ମୋଟା ପାଲ ଦେଇ ବୁଜିଦିଆଯାଇଛି । ଫଳରେ ଝଡ଼ ବର୍ଷା ସତ୍ତ୍ୱେ ଲୋକେ ଆରାମରେ ରହିଛନ୍ତି । ଭିତରକୁ ଚାହିଁ ଦେଇ ସେ ଦେଖିଲେ, ସେ ନିମନ୍ତ୍ରଣ କରିଥିବା ସବୁ ଲୋକ ଆସି ସେଇଠି ଜମିଛନ୍ତି । ନାଚତାମସା ଭିତରେ ସମସ୍ତେ ମଜ୍ଜିଯାଇଛନ୍ତି । ଦେଖଣାହାରିଙ୍କ ମଧ୍ୟରେ ତାଙ୍କ ନିଜ ଭାର୍ଯ୍ୟା ଓ ଝିଅ ଏଲିଜାବେଥ୍ ଜେନ୍ ବି ବସିଛନ୍ତି । ହେଞ୍ଚାର୍ଡ଼ କ୍ରୋଧରେ ଜଳିଗଲେ । ସେ ଭିତରକୁ ନଯାଇ ବାହାରେ ଅନ୍ଧାରରେ ଠିଆହୋଇ ଲୋକଙ୍କର ମନ୍ତବ୍ୟ ଶୁଣିବାକୁ ଲାଗିଲେ ।

ଜଣେ କେହି କହିଲା, ''ଏ ମଜା ଆଗରେ ହେଞ୍ଚାର୍ଡ଼ ସାହେବଙ୍କର ସେ ଶୁଖିଲା କାର୍ଯ୍ୟକ୍ରମ ସବୁ କିଛିନୁହେଁ ! ଆଜି ପରା ଝଡ଼ବର୍ଷା ଦିନରେ ଲୋକେ ସେ ଖୋଲା ପାହାଡ଼ଟା ଉପରକୁ ଯିବେ ବୋଲି ସେ କେଉଁ ବୁଦ୍ଧିରେ ଭାବିଥିଲେ କେଜାଣି !''

ଅନ୍ୟ ଜଣେ କେହି ପାଳି ଧରିଲା, ''ତାଙ୍କର ବୁଦ୍ଧିବୃତ୍ତି କେତେ ମ ? ଫର୍‌ଫ୍ରେବାବୁ ନଥିଲେ ତାଙ୍କ ବ୍ୟବସାୟର ବାର୍ ବାଜିସାରନ୍ତାଣି । ଗୋଟାଏ ଫର୍‌ଫ୍ରେର ମୁଣ୍ଡ ଦଶଟା ମେୟରର ମୁଣ୍ଡ ସଙ୍ଗେ ସମାନ, ଜାଣିଛ ?''

ହେଞ୍ଚାର୍ଡ଼ଙ୍କ ମୁହଁଟା କ୍ରୋଧରେ ବିବର୍ଣ୍ଣ ହୋଇଗଲା । ସେ ଲୋକଗହଳ କଟାଇ ଫର୍‌ଫ୍ରେଙ୍କ ପାଖକୁ ଚାଲିଲେ । କେତେ ଜଣ ସହରବାସୀ ତାଙ୍କୁ ସମ୍ବର୍ଦ୍ଧନା ଜଣାଇ ପାଛୋଟି ନେଉ ନେଉ ସେମାନଙ୍କ ମଧ୍ୟରୁ ଜଣେ ଥଟ୍ଟା କରି କହିଲେ,

''ଇଏ କ'ଣ, ସାହେବ ? ଆପଣଙ୍କ ସହିତ ବି ପ୍ରତିଦ୍ୱନ୍ଦ୍ୱିତା ହୋଇଗଲା, ଏଁ ! ଯାହା କହନ୍ତୁ, ଫର୍‌ଫ୍ରେ ଆପଣଙ୍କ ଶିରୀ ଛଡ଼େଇନେଲେ, ନୁହେଁ ?''

ଅନ୍ୟ ଜଣେ ଟିକିଏ ସହାନୁଭୂତି ଦେଖାଇ କହିଲେ, ''ସେତେ ଦୂରରେ ମୁଣ୍ଡିଆ ଉପରଟା ବାଛି ଆପଣ ଭୁଲ କଲେ । ଏମିତି ଗୋଟାଏ ଗଛ-ଗହଳିଆ ସ୍ଥାନ ଦେଖି ସେସବୁ ଖେଳକୁଦର ଆୟୋଜନ କରିଥିଲେ ବଢ଼ିଆ ହୋଇଥାନ୍ତା । ଆପଣ ସିନା ଏତେ ଗଭୀରକୁ ବିଚାର କଲେନାହିଁ, ହେଲେ ତାଙ୍କ ଦୂରଦୃଷ୍ଟି ଚମତ୍କାର; ତା'ରି ଫଳରେହିଁ ଆପଣ ପରାସ୍ତ ହୋଇଗଲେ ।''

ଆଉ ଜଣେ ବନ୍ଧୁ ହସି ହସି କହିଦେଲେ, ''ଦେଖନ୍ତୁ ନା, ଆଉ ଦିନାକେତେ ଭିତରେ ସେ ହିଁ ମାଲିକ ହୋଇ ବସିବେ ।''

ହେଞ୍ଚାର୍ଡ୍ ଉଦାସୀନ କଣ୍ଠରେ ଶୁଣାଇଦେଲେ, ''ନା, ସେତକ ହୋଇପାରିବନାହିଁ, ସେ ଏଥର କାମ ଛାଡ଼ି ଚାଲିଯିବେ ।'' —ଏବଂ ଏତକ କହିଦେଇ ଅଦୂରରେ ଠିଆହୋଇ କଥୋପକଥନ ଶୁଣୁଥିବା ଫର୍‌ଫ୍ରେଙ୍କ ମୁହଁକୁ ଚାହିଁ ସେ ପଚାରିଦେଲେ, ''ତାଙ୍କର ଏଥର ମୋ ବ୍ୟବସାୟର ମ୍ୟାନେଜର ପଦରୁ ବିଦାୟ ନେବାର ବେଳ ହୋଇଗଲା, ନୁହଁ ଫର୍‌ଫ୍ରେ ?

ହେଞ୍ଚାର୍ଡ଼ଙ୍କ ମୁହଁରୁ ହିଁ ସବୁକଥା ସ୍ପଷ୍ଟ ହୋଇଯାଉଛି ଦେଖି ଫର୍‌ଫ୍ରେ ତାଙ୍କ ସହିତ ଏକମତ ହୋଇଗଲେ । ପରେ ଲୋକେ ଯେତେବେଳେ ଫର୍‌ଫ୍ରେଙ୍କୁ କାହିଁକି ଚାକିରି ଛାଡ଼ିଦେଇଛ ବୋଲି ପଚାରିଲେ, ସେତେବେଳେ ଫର୍‌ଫ୍ରେ କହିଲେ, ''ହେଞ୍ଚାର୍ଡ୍ ସାହେବ ଆଉ ମୋର ସହାୟତା ଆବଶ୍ୟକ କରୁନାହାନ୍ତି ।''

ଆତ୍ମସନ୍ତୋଷ ନେଇ ହେଞ୍ଚାର୍ଡ୍ ଘରକୁ ଚାଲିଗଲେ ସତ; କିନ୍ତୁ ସକାଳେ ମନର ରାଗ ଯେତେବେଳେ ମରିଗଲା, ସେତେବେଳେ ସେ ବଡ଼ ଅସ୍ୱସ୍ତି ଅନୁଭବ କଲେ । ବିଶେଷତଃ ଯେତେବେଳେ ଦେଖିଲେ ଯେ ଗତ ରାତିର କଥାଟା ଉପରେ ଗୁରୁତ୍ୱଦେଇ ଫର୍‌ଫ୍ରେ ଚାକିରି ଛାଡ଼ି ଚାଲିଯିବାକୁ ଅଡ଼ି ବସିଛନ୍ତି, ସେତେବେଳେ ସେ ବାସ୍ତବିକ ବ୍ୟଥିତ ହୋଇପଡ଼ିଲେ ।

## ଛଅ

ହଁ, ସେଦିନ ସନ୍ଧ୍ୟାର କଥା—ଉତ୍ସବ ଶେଷ ହେବା ବେଳକୁ ଏଲିଜାବେଥ୍ ଜେନ୍ ଦେଖିଲା, ହେଞ୍ଚାର୍ଡ୍ ଓ ଫର୍‌ଫ୍ରେ ସେଠାରେ ଠିଆହୋଇ କ'ଣ ସବୁ

କଥାଭାଷା ହେଉଛନ୍ତି । ଦୂରରୁ ସ୍ପଷ୍ଟଭାବରେ କିଛି ଶୁଭୁ ନଥିଲେ ବି ସେ ଲକ୍ଷ୍ୟ କଲା, ମେୟର କାହିଁକି ଖୁବ୍ ରାଗିଯାଇଛନ୍ତି ଏବଂ ଫର୍‌ଫ୍ରେଙ୍କ ମୁହଁଟା ମଉଳିପଡ଼ିଛି । କିଛି ସମୟ ପରେ ସୁସାନ୍ ଆସି ହେଞ୍ଚାର୍ଡ୍‌ଙ୍କୁ ଘରକୁ ଡାକିନେଲେ । ଫର୍‌ଫ୍ରେ ବି ଚାଲିଗଲେ । ଏଲିଜାବେଥ୍ ଜେନ୍ ଏଥର ଘରକୁ ବାହୁଡ଼ିଲା । ତୋଟା ଭିତରୁ ଆସି ରାସ୍ତାରେ ପହଞ୍ଚୁ ପହଞ୍ଚୁ ଦେଖିଲା ଡୋନାଲ୍ଡ ଫର୍‌ଫ୍ରେ ତା'ପାଇଁ ଅପେକ୍ଷା କରିଛନ୍ତି । ତାକୁ ଦେଖି ଫର୍‌ଫ୍ରେ କହିଲେ, "କିଏ, ମିସ୍ ନ୍ୟୁସନ୍ ନା ? ଆପଣଙ୍କ ସହିତ ମୋର ଟିକିଏ କଥାହେବାର ଥିଲା; ଏହି ବାଟ ଦେଇ ଘରକୁ ଫେରୁଛନ୍ତି ବୋଧହୁଏ ?"

ହଁ ।

—ଆପଣଙ୍କ ସହିତ ସାହି ମୋଡ଼ପର୍ଯ୍ୟନ୍ତ ଯାଇପାରେ କି ?

ଏଲିଜାବେଥ୍ କୌଣସି ଆପତ୍ତି କଲାନାହିଁ । କିଛି ସମୟ ନୀରବରେ ଚାଲିବା ପରେ ଛେପ ଢୋକିନେଇ ଫର୍‌ଫ୍ରେ ଆରମ୍ଭ କଲେ, "ଏଥର ଆପଣମାନଙ୍କଠାରୁ ବିଦାୟ ନେଇ ଚାଲିଯିବାକୁ ପଡ଼ିବ ।"

କାହିଁକି ? —ବିସ୍ମିତ ହୋଇ ଏଲିଜାବେଥ୍ ପଚାରିଲା ।

କିଛି ନାହିଁ । ବ୍ୟବସାୟ କଥା; ସବୁଦିନ ସମାନ ଯାଏନାହିଁ । ଭାବୁଛି ମତେ ଏଥର ଦୁନିଆର ଆଉ ଗୋଟାଏ ଅଞ୍ଚଳକୁ ଚାଲିଯିବାକୁ ପଡ଼ିବ । — କହୁ କହୁ ଫର୍‌ଫ୍ରେ ମନକଥା ଖୋଲି କହିବାକୁ ଆରମ୍ଭ କରିଦେଲେ, "ଦୁଃଖର କଥା ଯେ ଆପଣଙ୍କ ସହିତ ମୋର ଆଉ ଦେଖା-ସାକ୍ଷାତ୍ ହୋଇପାରିବ ନାହିଁ । ମୋ ହାତରେ ଯଦି ପଇସାପତ୍ର ଥାଆନ୍ତା, ହେଞ୍ଚାର୍ଡ୍ ସାହେବ ଯଦି ମତେ ଭୁଲ ବୁଝିନଥାନ୍ତେ ତେବେ କେତେ ଭଲ ନହୁଅନ୍ତା ମିସ୍ ନ୍ୟୁସନ୍ ! ମୋର ବଡ଼ ଇଚ୍ଛା, ଆଜି ଏହି ରାତିରେ ମୁଁ ଆପଣଙ୍କୁ ଗୋଟିଏ କଥା ପଚାରନ୍ତି; କିନ୍ତୁ ନା, ମୋର ସେ ଅଧିକାର ଆଉ ନାହିଁ ।

କି କଥା ପଚାରିବାକୁ ଯେ ତାଙ୍କ ମନରେ ଲାଳସା ଜନ୍ମିଥିଲା, ତାହା ସେ ଖୋଲି କହିଲେନାହିଁ । ଏଲିଜାବେଥ୍ ଜେନ୍ ବି ସେ ବିଷୟରେ ତାଙ୍କୁ ଉତ୍ସାହ ଦେବାକୁ ସାହସ ନକରି ଚୁପ୍ ରହିଗଲା । କିଛି ସମୟ ନୀରବରେ କଟିଯିବା ପରେ ଫର୍‌ଫ୍ରେ କହିଲେ, "ମୋର ଆଶା, ମୁଁ ଚାଲିଯିବା ପରେ ଆପଣ ମତେ ପାସୋରିଯିବେନାହିଁ ।"

ଏକାନ୍ତ ଆନ୍ତରିକତା ଦେଖାଇ ଏଲିଜାବେଥ୍ କହିଲା, ''ନା, ନା, କଦାପି ନୁହେଁ । ମୁଁ... ମୋର ତ ଆଶା ଯେ ଆପଣ ଆମମାନଙ୍କୁ ଛାଡ଼ି ଏଠୁ ଚାଲିଯିବେ ନାହିଁ ।''

ମୁଁ ବି ସେହିକଥା ଭାବୁଛି, ମିସ୍ ନ୍ୟୁସନ୍ !... ହଉ, ଆପଣଙ୍କ ଘର ପାଖ ହୋଇଗଲା; ମୁଁ ଏଥର ଯାଏ, ବିଦାୟ ।

ବିଦାୟ ନେଇ ଦିହେଁ ଦିହିଁଙ୍କ ପଥରେ ଚାଲିଗଲେ । ରାତିରେ କିନ୍ତୁ ଏଲିଜାବେଥ୍ ଜେନ୍ ଆଖିକୁ ସହଜରେ ନିଦ ଆସିଲାନାହିଁ । ଆଖିଆଗରେ ଯୁବକ ଫରଫ୍ରେଙ୍କ ମୁହଁଟା ବାରମ୍ବାର ନାଚିଉଠିଲା । ବିଛଣାରେ ପଡ଼ି ସେ ଭାବିବାକୁ ଲାଗିଲା—ଫରଫ୍ରେ ଲୋକଟି ସହରର ସମସ୍ତଙ୍କର ପ୍ରିୟ; ତାଙ୍କ କାମଗୁଡ଼ାକ କେଡ଼େ ସୁନ୍ଦର ନୁହେଁ ସତେ ! ହେଞ୍ଚାର୍ଡ଼ ବଦ୍‌ମେଜାଜୀ ଲୋକ; ବହୁ ଦିନରୁ ଆଶଙ୍କା କରାଯାଉଥିଲା ଯେ ସେ ଦିନେ ନାହିଁ ଦିନେ ଫରଫ୍ରେଙ୍କୁ ଚାକିରିରୁ କାଢ଼ିଦେବେ । ବର୍ତ୍ତମାନ ଏ ଯେଉଁ ଘଟଣା ଘଟିଲା, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । କିନ୍ତୁ ମେୟର ତାଙ୍କୁ ଚାକିରିରୁ କାଢ଼ିଦେଲେ ବୋଲି, ସତେ କ'ଣ ଫରଫ୍ରେ ସହର ଛାଡ଼ି ଚାଲିଯିବେ ? ତାଙ୍କୁ କ'ଣ ଆଉ ଦେଖିବାକୁ ମିଳିବନାହିଁ ? ଆଃ, ନଯାଆନ୍ତେ ଯଦି, ସତରେ କେଡ଼େ ଭଲ ନ ହୁଅନ୍ତା !

ଫରଫ୍ରେ ଚାକିରିରୁ ବାହାରିଯିବା କଥାଟା ସହରରେ ରାଷ୍ଟ୍ର ହୋଇଯିବାକୁ ବେଶି ସମୟ ଲାଗିଲାନାହିଁ । ପରେ ପରେ ଶୁଣାଗଲା, ସେ ସହର ଛାଡ଼ି ଚାଲିଯାଉନାହାନ୍ତି, ଆଉ ଜଣେ ଗହମ ବ୍ୟବସାୟୀଙ୍କଠାରୁ ସେ ଗୋଟାଏ ଗୋଦାମଘର କିଣୁଛନ୍ତି; ଏଥର ସ୍ୱାଧୀନ ଭାବରେ ବ୍ୟବସାୟ କରିବେ । ଏ ଖବରଟା ପାଇ ହେଞ୍ଚାର୍ଡ଼ ଭୀଷଣ ରାଗିଉଠିଲେ । ଫରଫ୍ରେଙ୍କୁ କୌଣସିମତେ ଆଘାତ କରିବାକୁ ଭାବୁ ଭାବୁ ତାଙ୍କର ଏଲିଜାବେଥ୍ କଥା ମନେପଡ଼ିଗଲା । ସେ ସଙ୍ଗେ ସଙ୍ଗେ ତାକୁ ପାଖକୁ ଡାକି କହିଲେ, ''ତତେ ସାବଧାନ କରିଦେଉଛି ଝିଅ, ତୁ ସେ ଫରଫ୍ରେ ଲୋକଟା ସହିତ ଯେପରି କୌଣସି ସଂପର୍କ ନରଖୁ । ଦେଖିଛି, ତୁମେ ଦୁଇ ଜଣ ବହୁତ ଥର ଖୁସି ଗପରେ ମଜିଯାଇଛ । କ'ଣ ତାକୁ ବାହା ହେବା ଲାଗି କିଛି କଥା ଦେଇଛୁ କି ?''

ଏଲିଜାବେଥ୍ କହିଲା, ''ନା, ମୁଁ କୌଣସି କଥା ଦେଇନାହିଁ ।''

ଠିକ୍ କରିଛୁ । ମନେରଖିଥିବୁ, ଯେଉଁ କାମର ପରିଣାମଟା ଭଲ, ସେହିଟାହିଁ ଭଲ କାମ । ମୁଁ ବିଶେଷକରି କହିରଖୁଛି, ତା ସହିତ ଯେପରି ତୁ ମୋଟେ ଦେଖାନକରୁ ।''

ଆଚ୍ଛା ହେଉ ।

କ'ଣ ଶପଥ କରି କହୁଛୁ ତ ?

କିଛି ସମୟ ଇତସ୍ତତଃ ହୋଇ ଶେଷରେ ସେ କହିଲା, ''ଆପଣ ଯଦି କହୁଛନ୍ତି, ଶପଥ କରିବାରେ କ'ଣ ଅଛି ?''

ଝିଅ ଚାଲିଯିବା ପରେ ହେଞ୍ଚାର୍ଡ଼ ଖଣ୍ଡେ ଚିଠି ଲେଖି ଫର୍‌ଫ୍ରେଙ୍କୁ ଜଣାଇଦେଲେ...

ମହାଶୟ,

ମୋର ଅନୁରୋଧ, ଭବିଷ୍ୟତରେ ଆପଣ ମିସ୍ ନ୍ୟୁସନ୍ ସହିତ କୌଣସି ସମ୍ପର୍କ ରଖିବେନାହିଁ । ସେ ମୋ ପାଖରେ ଶପଥ କରି କହିଛି ଯେ ସେ ଆଉ ଆପଣଙ୍କ ସହିତ ସାକ୍ଷାତ୍ କରିବନାହିଁ । ମୋର ବିଶ୍ୱାସ, ଆପଣ ତା ପାଖକୁ ଆସିବାଲାଗି କିମ୍ୱା କଥାଭାଷା ହେବାଲାଗି କୌଣସି ଚେଷ୍ଟା କରିବେ ନାହିଁ ।

। ଇତି ।

ମାଇକେଲ୍ ହେଞ୍ଚାର୍ଡ଼

ଚିଠିଟା ପାଇବାମାତ୍ରେ ଫର୍‌ଫ୍ରେ ବଡ଼ କ୍ଷୁଣ୍ଣ ହୋଇପଡ଼ିଲେ । ଏଲିଜାବେଥ୍ ଜେନ୍‌ଠାରେ ତାଙ୍କର ଗୋଟାଏ ଅନୁରାଗ ଜନ୍ମିଯାଇଥିଲା । ତା'ର କୋମଳ ମଧୁର ବ୍ୟବହାରରେ, ତା'ର କୁସୁମ-କୋମଳ ରୂପଲାବଣ୍ୟରେ ସେ ବିମୁଗ୍ଧ ହୋଇଯାଇଥିଲେ । କିନ୍ତୁ କିଛି ସମୟ ଭାବିବା ପରେ ସେ ସ୍ଥିର କଲେ, ଅନ୍ତତଃ କୁମାରୀ ଏଲିଜାବେଥ୍‌ଙ୍କ ମଙ୍ଗଳ ଦୃଷ୍ଟିରୁ ତାଙ୍କୁ ହେଞ୍ଚାର୍ଡ଼ଙ୍କର ଅନୁରୋଧ ରକ୍ଷା କରିବାକୁ ପଡ଼ିବ; ଏଥର ଏଲିଜାବେଥ୍‌ଙ୍କର ମଧୁର ସ୍ମୃତିକୁ ମନରୁ ପୋଛିଦେବାକୁ ପଡ଼ିବ ।

ଏ ଭିତରେ ସେ ହେଞ୍ଚାର୍ଡ଼ଙ୍କର ଗୋଦାମଠାରୁ ଯଥାସମ୍ଭବ ଦୂରରେ ଖଣ୍ଡିଏ ଦୋକାନ ଓ ଅଫିସ ଖୋଲିସାରିଥାନ୍ତି । ତାଙ୍କର ଏକାନ୍ତ ଇଚ୍ଛା ଯେ, ହେଞ୍ଚାର୍ଡ଼ଙ୍କ ଗ୍ରାହକମାନେ ଯେପରି ତାଙ୍କଠାରୁ ଗହମ କିଣି ଗୋଟାଏ ଖରାପ ବୁଝାମଣା ସୃଷ୍ଟି ନକରନ୍ତି । ଯେଉଁ ମେୟରଙ୍କ ଅଧୀନରେ ସେ ଦିନେ ଚାକିରି କରିଥିଲେ, ସେ ମେୟରଙ୍କ ବ୍ୟବସାୟରେ କୌଣସି ପ୍ରକାର ଆଞ୍ଚ ନଆଣିବା ହିଁ ଫର୍‌ଫ୍ରେଙ୍କର ଅଭିପ୍ରାୟ ଥିଲା । ତେଣୁ ଦୋକାନ ଖୋଲିବାର ପ୍ରଥମ ଦିନ ପ୍ରଥମେ ଯେତେବେଳେ ହେଞ୍ଚର୍ଡ଼ଙ୍କର ଜଣେ ପୁରୁଣା ଗ୍ରାହକ ତାଙ୍କଠାରୁ ମାଲ ନେବାପାଇଁ

ଆସିଲେ, ସେତେବେଳେ ସେ ତାଙ୍କୁ ବିଷୟର ଗୁରୁତ୍ୱ ବୁଝାଇ ସଫା ସଫା କହିଦେଲେ, ''ଦେଖ ଭାଇ, ଦିନେ ସେ ମୋର ବନ୍ଧୁ ଓ ମଙ୍ଗଳାକାଂକ୍ଷୀ ଥିଲେ । ମୁଁ ଚାକିରି ଛାଡ଼ିଦେଲି ବୋଲି ତାଙ୍କ ହାତରୁ ବ୍ୟବସାୟଟା ଛଡ଼ାଇ ନେବାକୁ ଚାହେଁନା । ଯେଉଁ ଲୋକ ଦିନେ ମୋତେ ଏତେ ଭଲପାଉଥିଲେ, ମୁଁ କିପରି ସେ ଲୋକର କ୍ଷତି କରିବାକୁ ଯିବି କହିଲ ?''

ଏହା କରିବା ସତ୍ତ୍ୱେ ଯୁବକ ଫରଫ୍ରେଙ୍କର ବ୍ୟବସାୟ ବଢ଼ିଚାଲିଲା । ମାସ କେତେଟା ଭିତରେ ସେ ଏକ ବିରାଟ ବ୍ୟବସାୟ ପ୍ରତିଷ୍ଠାନ ଗଢ଼ି ତୋଳିଲେ । ଏଣେ ମେୟର ହେଞ୍ଚାର୍ଡ଼ଙ୍କର ବାରଣ ସତ୍ତ୍ୱେ ଏଲିଜାବେଥ୍ ଜେନ୍ ସବୁବେଳେ ଫରଫ୍ରେଙ୍କ ଅନୁଚିନ୍ତାରେ ବୁଡ଼ିରହିଲା । ଦୁର୍ଯୋଗକୁ ତେଣେ ସୁସାନ୍ ଅସୁସ୍ଥ ହୋଇପଡ଼ିଲେ । ଅବସ୍ଥା ଏପରି ହେଲା ଯେ, ସେ ଏଘରୁ ଆରଘରକୁ ଯାଇପାରିଲେନାହିଁ; ଶେଷକୁ ହେଞ୍ଚାର୍ଡ଼ ଡାକ୍ତରଙ୍କୁ ଡକାଇଲେ । ଚିକିତ୍ସା ଚାଲିଲା; କିନ୍ତୁ କୌଣସି ଉପକାର ମିଳିଲାନାହିଁ । ସୁସାନ୍ ଏପରି ଦୁର୍ବଳ ହୋଇପଡ଼ିଲେ ଯେ ବସିବା ସ୍ଥାନରୁ ଉଠିପାରିଲେନାହିଁ । କେବଳ ଶେଯରେ ପଡ଼ି ପଡ଼ି ଲୁହ ଝରାଇବାକୁ ଲାଗିଲେ । ପାଟିରୁ କଥା ବାହାରିଲାନାହିଁ । ଅବସ୍ଥା ଅତି ଖରାପ ହେବା ବେଳକୁ ଠାରିଲେ; କାଗଜ କଲମ ଦେଲେ ସେ ମନକଥା ଲେଖିଦେବେ । କାଗଜ କଲମ ଆଣି ଦିଆଗଲା । ସୁସାନ୍ ଏକାନ୍ତରେ ବସି କିଛି ସମୟ କ'ଣ ଲେଖିଲେ ଓ ତା'ପରେ କାଗଜଟିକୁ ଗୋଟିଏ ଖାମ୍ ଭିତରେ ଭରିଦେଇ ଜଉମୁଦ ଲଗାଇଦେଲେ । ମୁଦା ଖାମ୍ ଉପରେ ଲେଖିଦେଲେ—

''ମାଇକେଲ୍ ହେଞ୍ଚାର୍ଡ଼ ସମୀପେଷୀ—

ଏଲିଜାବେଥ୍ ଜେନ୍‌ର ବିବାହ ସମ୍ପନ୍ନ ନହେବାଯାଏ ଖୋଲିବ ନାହିଁ ।''

କିଛି ଦିନ ପରର କଥା । ରବିବାରଟା । ହେଞ୍ଚାର୍ଡ଼ଙ୍କ ଘର ପାଖ ଦେଇ ଯାଉ ଯାଉ ଫରଫ୍ରେ ଜଣେ ଚାକରଠାରୁ ଶୁଣିଲେ ଯେ ପୂର୍ବଦିନ ରାତିରେ ଶ୍ରୀମତୀ ହେଞ୍ଚାର୍ଡ଼ଙ୍କର ପରଲୋକ ହୋଇଗଲା ।

ମାଆଙ୍କର ମୃତ୍ୟୁ ପରେ ପରେ ଏଲିଜାବେଥ୍ ଜେନ୍ ପକ୍ଷରେ ଜୀବନଟା ନିଃସଙ୍ଗ ନିଃସହାୟ ମନେହେଲା । ସେ ଯେ ହେଞ୍ଚାର୍ଡ଼ଙ୍କ ପରିବାରରେ ଜଣେ ହୋଇ ନରହିଲା ତା ନୁହେଁ; ବରଂ ତା'ର ଉପସ୍ଥିତିହିଁ ହେଞ୍ଚାର୍ଡ଼ଙ୍କର ଦାରୁଣ ଦୁଃଖମୟ ଜୀବନଟାକୁ ଯତ୍‌କିଞ୍ଚିତ୍ ଆନନ୍ଦ ଯୋଗାଇବାରେ ସାହାଯ୍ୟ କଲା । ତଥାପି ସେ ଅନୁଭବ କଲା ହେଞ୍ଚାର୍ଡ଼ ଓ ତା ମଧ୍ୟରେ ଯେପରି ଗୋଟାଏ କିଛି ବିଭାଜିକା

ଠିଆହୋଇଛି । ସୁସାନ୍‌ଙ୍କ ଅନ୍ତେଷ୍ଟିକ୍ରିୟାର ପ୍ରାୟ ତିନି ସପ୍ତାହ ପରର କଥା । ରାତି ଖିଆପିଆ ଶେଷହେବା ପରେ ଆଲୁଅ ଲିଭାଇଦେଇ ହେଞ୍ଚାର୍ଡ଼ ଓ ଏଲିଜାବେଥ୍ ନିଆଁ ପାଖରେ ବସି ହାତ ପାଦ ସେକି ହେଉ ହେଉ ନିଜ ନିଜ ଚିନ୍ତାରେ ବୁଡ଼ିଯାଇଥାନ୍ତି । କିଛି ସମୟ ନୀରବରେ କଟିଯିବା ପରେ ହଠାତ୍ ହେଞ୍ଚାର୍ଡ଼ ପଚାରିଲେ, ''ଏଲିଜାବେଥ୍, ତୋର କ'ଣ ଅତୀତ କଥା ସବୁବେଳେ ମନେପଡ଼େ ?''

''ହଁ, ପ୍ରାୟ ସବୁବେଳେ ମନେପଡ଼େ ।''

—କାହା କଥା ବେଶି ମନେପଡ଼େ ?

ଦୁଃଖଭରା କଣ୍ଠରେ ଏଲିଜାବେଥ୍ କହିଲା, ''ବାପା ଓ ମାଆଙ୍କ କଥା ।''

ହେଞ୍ଚାର୍ଡ଼ ବିଷଣ୍ଣ ହୋଇଗଲେ । ତଥାପି କୋମଳ କଣ୍ଠରେ ସେ ପଚାରିଲେ, ''ମୁଁ ଯଦି ତୋର ପ୍ରକୃତ ବାପା ହୋଇଥାନ୍ତି, ତେବେ ରିଚାର୍ଡ଼ ନ୍ୟୁସନ୍‌ଙ୍କୁ ତୁ ଯେପରି ଭଲପାଉଥିଲୁ, ମତେ ବି ସେପରି ଭଲପାଆନ୍ତୁ ?''

ସଙ୍ଗେ ସଙ୍ଗେ ଏଲିଜାବେଥ୍ କହିଉଠିଲା, ''କ୍ଷମା କରିବେ, ମୁଁ କାହିଁକି ସେ ବିଷୟରେ ଚିନ୍ତା କରିପାରୁନାହିଁ । ଅନ୍ୟ ଲୋକକୁ କିପରି ନିଜର ବାପା ବୋଲି କୁହାଯିବ, ମୁଁ ସେ ବିଷୟ ବୁଝିପାରୁ ନାହିଁ ।''

ହେଞ୍ଚାର୍ଡ଼ଙ୍କର ବିଦଗ୍ଧ ହୃଦୟ ଉପରେ ଯେପରି ଗୋଟାଏ ଛୁରି ଦାଗ ବସିଗଲା । ମୃତ୍ୟୁ ତାଙ୍କଠାରୁ ଭାର୍ଯ୍ୟାଙ୍କୁ ଛଡ଼ାଇ ନେଇଥିଲା; କ୍ରୋଧ ଓ ଈର୍ଷାର ବଶବର୍ତ୍ତୀ ହୋଇ ସେ ସହାୟକ ବନ୍ଧୁ ଫର୍‌ଫ୍ରେଙ୍କୁ ହରାଇ ବସିଥିଲେ; ବର୍ତ୍ତମାନ ଦେଖାଗଲା, ଝିଅ ଏଲିଜାବେଥ୍ ଜେନ୍ ବି ତାଙ୍କ ପାଖରୁ ପର ପରି ଦୂରେଇ ଯାଉଛି । ତାଙ୍କ ସହିତ ତା'ର ପ୍ରକୃତ ସମ୍ପର୍କଟା ଯେ କ'ଣ, ତାହା ସେ ଜାଣେନା । ହେଞ୍ଚାର୍ଡ଼ ଦେଖିଲେ, ଏ ତିନି ଜଣଙ୍କ ମଧ୍ୟରୁ ଝିଅକୁହିଁ ପୁଣି ନିଜର କରାଯାଇପାରେ । ବିଷାଦ-ବିଦଗ୍ଧ ହୋଇ ସେ ବସିଥିବା ସ୍ଥାନରୁ ଉଠିପଡ଼ିଲେ । ଚିନ୍ତାକୁଳଭାବରେ କୋଠରି ଭିତରେ ପଦଚାରଣ କରୁ କରୁ ସେ ଆସି ଏଲିଜାବେଥ୍‌ର ଚଉକି ପଛପଟରେ ଠିଆହୋଇ ତା'ର ମଥା ଉପରେ ମୁହଁ ରଖି ପଚାରିଲେ, ''ମୋ ବିଷୟରେ ତୋ ମାଆ କ'ଣ ସବୁ କହୁଥିଲେ ?''

ବିସ୍ମିତ ହୋଇ ଏଲିଜାବେଥ୍ କହିଲା, ''ସେ କହୁଥିଲେ, ଆପଣଙ୍କ ସହିତ ଅତୀତରେ ତାଙ୍କର ବୈବାହିକ ସମ୍ପର୍କ ରହିଥିଲା ।''

ତୁ ମୋତେ ଦେଖିବା ପୂର୍ବରୁ ସେ ତୋତେ ଆହୁରି ଅନେକ କିଛି କହିଦେବା ଉଚିତ ଥିଲା । ତା' ହୋଇଥିଲେ ସବୁ କଥା ବୁଝାଇ କହିବା ମୋ ପକ୍ଷରେ ଅଧିକ ସହଜ ହୋଇଥାନ୍ତା...ଏଲିଜାବେଥ, ...ମୁଁ...ମୁଁ ହିଁ ତୋର ପ୍ରକୃତ ବାପା; ରିଚାର୍ଡ଼ ନ୍ୟୁସନ ତୋର ବାପା ନୁହନ୍ତି ।

ଏଲିଜାବେଥ୍ ସ୍ତମ୍ଭୀଭୂତ ହୋଇଗଲା । ହେଞ୍ଚାର୍ଡ଼ କହିଚାଲିଲେ, ''ଖୁବ୍ କମ୍ ବୟସରୁ ତୋ ମାଆଙ୍କ ସହିତ ମୋର ବିବାହ ସମ୍ପନ୍ନ ହୋଇଯାଇଥିଲା । ଏ ଯେଉଁ ବିବାହ ଦେଖିଲୁ, ଏହା ଆମର ଦ୍ୱିତୀୟ ବିବାହ । ସେ ଅନେକ କଥା । ଘଟଣାକ୍ରମେ ମୁଁ ଭାବିଲି, ତୋ ମାଆ ଆଉ ବଞ୍ଚିନାହାନ୍ତି; ସେ ଭାବିଲେ ମୁଁ ଆଉ ବଞ୍ଚିନାହିଁ । ଫଳତଃ ସେ ରିଚାର୍ଡ଼ ନ୍ୟୁସନ୍‌ଙ୍କୁ ବିବାହ କରିଥିଲେ ।'' ଝିଅର ବୟସ ଓ ଅବସ୍ଥା ଦୃଷ୍ଟିରୁ ସେ ଅସଲ ସତ୍ୟଟାକୁ ଆଉ ଖୋଲି କହିପାରିଲେନାହିଁ । ଅବଶ୍ୟ କଥାପ୍ରସଙ୍ଗରେ ସେ ଅତୀତର ଆହୁରି ଅନେକ ଘଟଣା ବର୍ଣ୍ଣନା କରିଗଲେ; କିନ୍ତୁ ମେଳାପଡ଼ିଆର ସେହି ଲଜ୍ଜାକର ବିକ୍ରୟ ଘଟଣାଟା କହିପାରିଲେନାହିଁ । ଶେଷରେ ଏଲିଜାବେଥ୍ ଯେତେବେଳେ ବିଶ୍ୱାସ କଲା ଯେ ହେଞ୍ଚାର୍ଡ଼ ସତ କହୁଛନ୍ତି, ସେତେବେଳେ ତା'ର ହୃଦୟ ଦୁଃଖରେ ବିଦୀର୍ଣ୍ଣ ହୋଇଗଲା । ସେ ଟେବୁଲ୍ ପାଖକୁ ଘୁଞ୍ଚିଯାଇ ମୁଣ୍ଡପୋତି କଇଁକଇଁ ହୋଇ କାନ୍ଦିଉଠିଲା ।

ହେଞ୍ଚାର୍ଡ଼ଙ୍କର ଆଶ୍ୱାସନା ବାଣୀ ଶୁଣାଗଲା, ''କାନ୍ଦନା ମା' ! କାନ୍ଦନା, ତୁ କାନ୍ଦିଲେ ମୁଁ ସହିପାରିବିନାହିଁ ରେ ମାଆ ! ସତରେ ମୁଁ ତୋର ବାପା, ତୁ କାନ୍ଦୁଛୁ କାହିଁକି ? କ'ଣ ମୁଁ ଏତେ ଘୃଣ୍ୟ ? ମାଆରେ, ମାଆ ଏଲିଜାବେଥ୍ ! ମତେ ଘୃଣା କରନା ମାଆ !''—କହୁ କହୁ ଏଲିଜାବେଥ୍‌ର ହାତ ଧରି ହେଞ୍ଚାର୍ଡ଼ ବି କାନ୍ଦିଉଠିଲେ, ''ମତେ ଘୃଣା କରନା ମା' ! ସେ ତତେ ଯେତେ ଭଲ ପାଉଥିଲେ, ମୁଁ ତା'ଠାରୁ ବେଶି ଭଲପାଇବି; ମତେ ଯଦି ବାପା ବୋଲି ଗ୍ରହଣ କରିବୁ, ମୁଁ ତୋପାଇଁ ସବୁ କିଛି କରିଦେବି ।''

ଏଲିଜାବେଥ୍ ଚେଷ୍ଟା କଲା, ତାଙ୍କୁ ମୁହଁଟେକି ଚାହିଁବ; କହିବ, ସେ ତାଙ୍କୁ ଅବିଶ୍ୱାସ କରୁନାହିଁ । କିନ୍ତୁ ନା, ସେ ପାରିଲାନାହିଁ, ତା ମନରେ ଏକ ବିରାଟ ଧକ୍‌କା ଲାଗିଯାଇଥିଲା । ହେଞ୍ଚାର୍ଡ଼ କହିଲେ, ''ମୁଁ କହୁନାହିଁ ଯେ ତୁ ଏହି ମୁହୂର୍ତ୍ତରେ ସେ ପୂର୍ବ ସମ୍ପର୍କଟା ପାସୋରିଯାଇ ମୋ କୋଳକୁ ଚାଲିଆସ । ତୁ ଟିକିଏ ଶାନ୍ତିରେ ଶୁଅ; ଯଦି କହିବୁ, ମୁଁ କାଲି ପର୍ଯ୍ୟନ୍ତ ଏ ବିଷୟରେ ତତେ

ବ୍ୟସ୍ତ କରିବିନାହିଁ । କିନ୍ତୁ ଗୋଟିଏ କଥା ମାଆ, ତୁ ବର୍ତ୍ତମାନଠାରୁ ତୋ ସଂଜ୍ଞାଟା ବଦଳାଇଦେ । ତୁ ମୋ ସଂଜ୍ଞା ଗ୍ରହଣ କରି କହ, 'ମୋ ନାଁ ଏଲିଜାବେଥ୍ ଜେନ୍ ହେଞ୍ଚାର୍ଡ୍ । —ତୁ କ'ଣ ବୁଝିପାରୁନୁ ମାଆ, ଏଇଟାହିଁ ତୋର ପ୍ରକୃତ ସଂଜ୍ଞା ? ତୁ ଯେ କାହିଁକି ସଂଜ୍ଞା ବଦଳାଇଲୁ, ଲୋକଙ୍କୁ ତୋର କୈଫିୟତ୍ ଦେବା ଦରକାରନାହିଁ । ତୁ କହିବୁ, 'ମୋର ଇଚ୍ଛା ହେଲା, ମୁଁ ବଦଳାଇଦେଲି'—ବେଶ୍ ।''

କ୍ଷୀଣ କଣ୍ଠରେ ଏଲିଜାବେଥ୍ କହିଲା, ''ଯେଉଁଟା ମୋର ପ୍ରକୃତ ସଂଜ୍ଞା, ସେ ସଂଜ୍ଞା ଗ୍ରହଣ କଲେ କ୍ଷତି କ'ଣ ? ମୋର କ'ଣ ସେତିକି ଅଧିକାର ନାହିଁ ?''

''ବେଶ୍, ବେଶ୍, ସେହି କଥା । ଆମେ ତା'ହେଲେ କାଲି ସେ ସବୁ କରାଇନେବା । ମୁଁ ଆଉ ତୋତେ ହଇରାଣ କରୁନାହିଁ; ଯାଉଛି, ଉପରମହଲାରେ କେତେଗୁଡ଼ାଏ କାଗଜପତ୍ର ଅଛି, ଖୋଜି ବାହାର କରିବି । ସେସବୁ ଦେଖିଲେ ତୋର ବିଶ୍ୱାସଟା ଦୃଢ଼ ହୋଇଯିବ । ରାତି ଡେରି ହେଲାଣି; ତୁ ଯାଅ, ଆରାମରେ ଶୋଇପଡ଼ ।''

ଏଲିଜାବେଥ୍ ଏସବୁ କଥାର ମର୍ମ ଉପଲବ୍ଧି କରିବା ପୂର୍ବରୁ ହେଞ୍ଚାର୍ଡ୍ ସେଠାରୁ ଚାଲିଗଲେ । ମନେ ମନେ ସେ ଧନ୍ୟବାଦ ଦେଇ ନିଆଁ ପାଖକୁ ଯାଇ ଟିକିଏ ଆରାମରେ ବସିଲା; କିନ୍ତୁ ତା'ର ଆଖିର ଲୁହଧାର ବନ୍ଦ ହେଲା ନାହିଁ । ସେ ମାଆଙ୍କ ବିଚ୍ଛେଦଲାଗି କାନ୍ଦୁନଥିଲା, କାନ୍ଦୁଥିଲା ରିଚାର୍ଡ୍ ନ୍ୟୁସନ୍‌ଙ୍କ କଥା ଭାବି ଭାବି । ଯେଉଁ ଲୋକ ତାକୁ ଏତେ ଆଦର, ଏତେ ସ୍ନେହ କରୁଥିଲେ, ତାଙ୍କ ପ୍ରତି ସେ କି ଅନ୍ୟାୟ ନକରିବାକୁ ଯାଉଛି ସତେ !

ତେଣେ ହେଞ୍ଚାର୍ଡ୍ ଉପରମହଲାକୁ ଯାଇ ତାଙ୍କର ଦରକାରୀ କାଗଜପତ୍ର ଥିବା ଆଲମାରି ଖୋଲିଦେଲେ । ସ୍ତ୍ରୀଙ୍କର କାଗଜପତ୍ର ବି ସେଥିରେ ଥାଏ । ଦେଖୁ ଦେଖୁ ସୁସାନ୍ ଶେଷ ଜୀବନରେ ଲେଖିଯାଇଥିବା ଚିଠି ଖଣ୍ଡିକ ନଜରରେ ପଡ଼ିଲା । ଖାମ୍ ଉପରେ ଲେଖାଥିଲା, ''ଏଲିଜାବେଥ୍ ଜେନ୍‌ର ବିବାହ ସମ୍ପନ୍ନ ନହେବାଯାଏ ଖୋଲିବନାହିଁ ।'' ଚିଠିରେ ସେପରି କିଛି ଗୁରୁତ୍ୱପୂର୍ଣ୍ଣ ବିଷୟ ଲେଖାଯାଇଥିବ ବୋଲି ହେଞ୍ଚାର୍ଡ୍ ଭାବିପାରିଲେନାହିଁ । ତା'ଛଡ଼ା ସେ କୌଣସି ଦିନ ସ୍ତ୍ରୀଙ୍କ କଥାକୁ ସମ୍ମାନ ଦେଇନଥିଲେ । ମନେ ମନେ ଭାବିଲେ, ସୁସାନ୍‌ର ବେଳେ ବେଳେ ସାମାନ୍ୟ କଥାରେ ବି ଗୋଟାଏ ଗୋଟାଏ ଖିଆଲ ଉଠେ; ଏଇଟା ସେପରି କିଛି ଗୋଟାଏ ଖିଆଲ ହୋଇଥିବ । ତେଣୁ ସେ ବିନା କୌତୂହଳରେ ସିଲ୍ ଭାଙ୍ଗି ଚିଠିଟା ଖୋଲିଦେଲେ । ପଢ଼ିଲେ—

''ପ୍ରିୟ ମାଇକେଲ୍,

ଆମ ତିନିଜଣଙ୍କର ମଙ୍ଗଳଲାଗି ମୁଁ ଆଜିପର୍ଯ୍ୟନ୍ତ ଗୋଟାଏ କଥା ଗୋପନ ରଖିଛି । ମୋର ଆଶା, ମୋତେ ଭୁଲ ବୁଝିବନାହିଁ । ଭାବୁଛି, ତୁମେ ବୋଧହୁଏ ମୋତେ କ୍ଷମା କରିବନାହିଁ । ତଥାପି ଇଚ୍ଛାକଲେ ତୁମେ କ୍ଷମା କରିପାରିବ । ମୋତେ ବିଶ୍ୱାସ କର, ପ୍ରିୟ ମାଇକେଲ୍, ମୁଁ ଏହା ଅପେକ୍ଷା ଅଧିକ କିଛି କରିପାରିନଥାନ୍ତି । ଗାଳିଦେବନାହିଁ । ଏ ଏଲିଜାବେଥ୍ ଜେନ୍ ତୁମ ଝିଅ ଏଲିଜାବେଥ୍ ଜେନ୍ ନୁହେଁ । ଆମର ସେ ଝିଅଟି ମୁଁ ତୁମ ପାଖରୁ ଚାଲିଯିବାର ତିନି ମାସ ପରେ ମରିଗଲା । ଏ ହେଉଛି ମୋର ଅନ୍ୟ ସ୍ୱାମୀଙ୍କର ସନ୍ତାନ । ଝିଅକୁ ହରାଇ ମୁଁ ଯେଉଁ ଦାରୁଣ ଦୁଃଖ ଅନୁଭବ କରୁଥିଲି, ସେହି ଦୁଃଖର ଉପଶମଲାଗି ଏ ଝିଅକୁ ଆର ଝିଅର ନାମ ଦେଇଦେଲି । ଏଥର ତା'ର ସ୍ୱାମୀଙ୍କୁ ଏହିସବୁ କଥା କହିବି କି ନାହିଁ, ତୁମେ ହିଁ ଠିକ୍ କର । ମୋର ଏକାନ୍ତ ଅନୁରୋଧ, ଯେଉଁ ଅବଳା ନାରୀ, ତୁମର ଏତେ ଅନ୍ୟାୟ, ଏତେ ଅତ୍ୟାଚାର କ୍ଷମା କରିପାରିଛି, ତାକୁ ତୁମେ ନିଶ୍ଚୟ କ୍ଷମା କରିବ ।

ସୁସାନ ହେଞ୍ଚାର୍ଡ଼ ।''

ହେଞ୍ଚାର୍ଡ଼ ସେ ଚିଠିଟାକୁ ଥର ଥର କରି ତିନିଥର ପଢ଼ିପକାଇଲେ । ବିଷୟର ଗୁରୁତ୍ୱ ଅବଧାରଣ କରିବା ସଙ୍ଗେ ସଙ୍ଗେ ବିବେକର କଷାଘାତରେ ସେ ସ୍ପଷ୍ଟ ଉପଲବ୍ଧି କଲେ ଯେ ଏତେ ଦିନ ଧରି ଗୋପନ ରଖାଯାଇଥିବା ସତ୍ୟଟିର ଏହି ତିକ୍ତ ଉଦ୍‌ଘାଟନହିଁ ତାଙ୍କର ସମୁଚିତ ଶାସ୍ତି । ଏହାହିଁ ତାଙ୍କ କୃତକର୍ମର ଉପଯୁକ୍ତ ପ୍ରାପ୍ୟ । ଭାରାକ୍ରାନ୍ତ ହୃଦୟରେ କୋଠରି ମଧ୍ୟରେ ପଦଚାରଣ କରି କରି ସେ ରାତି କଟାଇଦେଲେ । ସେ ଘନ ଅନ୍ଧକାର ଭିତରେ ତାଙ୍କର ସେହି ବେଦନାବିଦୀର୍ଣ୍ଣ ଅବସ୍ଥା ବାସ୍ତବିକ୍ ବଡ଼ ଦୟନୀୟ । ନୈରାଶ୍ୟ ଓ ମାନସିକ ବେଦନାରେ ବିକ୍ଷୁବ୍‌ଧ ହୋଇ ସେ ସ୍ତ୍ରୀକୁ ଅଭିଶାପ ଦେବାକୁ ଲାଗିଲେ; କିନ୍ତୁ ତାଙ୍କ ଅନ୍ତରାତ୍ମା ସୁସାନ୍‌କୁ ଦୋଷ ଦେଇପାରିଲାନାହିଁ । ଯାହାହେଉ, ରାତି ପାହି ସକାଳ ହେବାବେଳକୁ ସେ ଭବିଷ୍ୟତ ପନ୍ଥା ସ୍ଥିର କରିସାରିଥିଲେ । ଏଲିଜାବେଥ୍ ଜେନ୍‌କୁ ସେ ଥରେ କହିସାରିଥିଲେ ଯେ, ସେ ତାର ବାପା; ଏଥର ଯେକୌଣସି ପରିସ୍ଥିତି ଆସୁ ପଛେ ସେ ଆଉ ତାକୁ ପ୍ରକୃତ ସତ୍ୟଟା କହିବେନାହିଁ ।

କିନ୍ତୁ ଏ ନୂତନ ପରିସ୍ଥିତିର ପ୍ରଥମ ସୋପାନଟାଲାଗି ସେ ନିଜକୁ ପ୍ରସ୍ତୁତ କରିପାରିଲେନାହିଁ । ସକାଳେ ଜଳଖିଆ ଖାଇବାଲାଗି ଯିବା ମାତ୍ରେ, ଏଲିଜାବେଥ୍ ଆସି ତାଙ୍କର ହାତ ଧରିପକାଇ ହସି ହସି କହିଲା, ''କାଲି ରାତିସାରା ମୁଁ ଏ ବିଷୟରେ ଭାବିଛି । ମୋର ବିଶ୍ୱାସ ଆସିଯାଇଛି ଯେ ଆପଣ ଯାହାସବୁ କହିଲେ ସେସବୁ ସତ । ଆପଣଙ୍କୁହିଁ ମୁଁ ବାପା ବୋଲି ଗ୍ରହଣ କରିବି । କିନ୍ତୁ ସତ କହୁଛି, ନ୍ୟୁସନ୍ ମୋତେ ଭାରି ସ୍ନେହ ଆଦର କରୁଥିଲେ...! କହୁ କହୁ ତା'ର ଆଖି ଦୁଇଟି ଲୁହଛଳଛଳ ହୋଇଆସିଲା । ମନକୁ ସଂଯତ କରି, ମୁହଁରେ ହସ ଫୁଟାଇ ସେ ପୁଣି କହିଲା, ''କିନ୍ତୁ ଯେତେ ଯାହା ହେଲେ କ'ଣ ହେଲା, ପ୍ରକୃତ ବାପାହିଁ ବାପା । ଆସ ବାପା, ଜଳଖିଆ ବଢ଼ାହେଲାଣି ।''

ତା' କପାଳରେ ଗୋଟିଏ ମାମୁଲି ଚୁମ୍ବନ ଆଙ୍କିଦେଇ ସେ ଜଳଖିଆ ଖାଇବସିଲେ । ବାପା ଓ ଝିଅର ଏହି ମଧୁର ମିଳନ ମୁହୂର୍ତ୍ତଟିକୁ ସେ କେତେ ଥର କଳ୍ପନାପଟରେ ଆଙ୍କିନଥିଲେ ସତେ ! କିନ୍ତୁ ହାୟ, ଆଜି ସେ ମୁହୂର୍ତ୍ତ ଆସିବାବେଳକୁ ତା ଭିତରୁ ସକଳ ଆନନ୍ଦ ଅନ୍ତର୍ହିତ ହୋଇଯାଇଥିଲା । ସେ ଆଉ ଥରେ ବିବାହ କରିଥିଲେ ମୁଖ୍ୟତଃ ଝିଅର ସୁଖସମୃଦ୍ଧିଲାଗି; କିନ୍ତୁ ଅନ୍ତରର ସବୁ କଳ୍ପନା ଅନ୍ତରରେହିଁ ଜଳିପୋଡ଼ିଗଲା; ଧୂଳି ପାଉଁଶ ହୋଇ ବୋଝ ପରି ଲଦିହୋଇଗଲା ସେହି ଅନ୍ତର ଉପରେ !!

## ସାତ

ସେହିଦିନଠାରୁ ହେଞ୍ଚାର୍ଡ଼ଙ୍କର ବ୍ୟବହାର ଏଲିଜାବେଥ୍‌କୁ ପ୍ରହେଳିକା ପରି ବୋଧହେଲାଣି । ରାତିରେ ଯେତେବେଳେ ସେ ତା'ର ବାପା ବୋଲି ଦାବି କରିଥିଲେ, ସେତେବେଳେ ତାଙ୍କର ଅକପଟ ଆବେଗହିଁ ଏଲିଜାବେଥ୍‌କୁ ଅଭିଭୂତ କରିଦେଇଥିଲା । କିନ୍ତୁ ଆଶ୍ଚର୍ଯ୍ୟ କଥା, ରାତି ପାହି ସକାଳ ହେବା ପରଠାରୁ ତାଙ୍କର ବ୍ୟବହାର ନିତାନ୍ତ ଉଦାସୀନ ହୋଇଚାଲିଛି । ପୂର୍ବରୁ କୌଣସି ଦିନ ସେ ଏପରି ନିଷ୍ଠୁରଭାବ ଦେଖାଇନଥିଲେ । ଏଲିଜାବେଥ୍ କ୍ରମଶଃ ଦେଖିଲା, ତା'ର କୌଣସି କାର୍ଯ୍ୟ ଆଉ ତାଙ୍କ ପସନ୍ଦକୁ ଆସୁନାହିଁ । କଥାକଥାକେ ସେ ଗାଳି ସମାଲୋଚନା କରୁଛନ୍ତି; କହୁଛନ୍ତି, ସେ ନିତାନ୍ତ ମଫସଲୀଟାଏ, ତା'ର ଶିକ୍ଷା ଦୀକ୍ଷା ବୋଲି କିଛିନାହିଁ ।

ତେଣେ ହେଞ୍ଚାର୍ଡ଼ ଦେଖିଲେ ସେ ନିଜର ମନୋଭାବ ବଦଳାଇପାରୁନାହାନ୍ତି; ମନୋଭାବ ଲୁଚାଇବା ତାଙ୍କର ସ୍ୱଭାବବିରୁଦ୍ଧ ହୋଇଥିବାରୁ ତାକୁ ଲୁଚାଇ ବି ପାରୁନାହାନ୍ତି । ଏଲିଜାବେଥ୍‌କୁ ଦେଖିବା ମାତ୍ରେ ତାଙ୍କ ମନରେ ଗୋଟାଏ ବିତୃଷ୍ଣା ଜାତ ହୋଇଯାଉଛି– ଏଇଟା ମୋ ଝିଅ ନୁହେଁ । ଏଥର ସେ ଘରେ ଖିଆପିଆ କରିବା ମଧ୍ୟ ବନ୍ଦ କରିଦେଲେଣି । ବିରାଟ ଘରଟାରେ ଝିଅଟାକୁ ଏକାଟିଆ ଛାଡ଼ିଦେଇ ରାତିରେ ସେ ପ୍ରାୟ କୌଣସି ବଡ଼ ହୋଟେଲ୍‌କୁ ଖାଇବାକୁ ଚାଲିଯାଉଛନ୍ତି । ବିଚାରୀ ଏକା ଏକା ରାତିତମାମ ପାଟି ବନ୍ଦ କରି କିପରି ସେ ସମୟ କଟାଉଛି, ତାହା ଦେଖିଲେ ତାଙ୍କ ହୃଦୟ ବୋଧହୁଏ ତରଳିଯାଆନ୍ତା ! ସମାଲୋଚନା ଓ ବିଦ୍ରୂପ ଶୁଣି ଶୁଣି ଏଲିଜାବେଥ୍ ଏଥର କିଛି ବହିପତ୍ର କିଣି, ସୁବିଧା ଦେଖି ପଡ଼ୋଶୀମାନଙ୍କଠାରୁ ବହି ମାଗିଆଣି ପଢ଼ାପଢ଼ି କରିବାକୁ ଲାଗିଲା । ଭଲ ହସ୍ତାକ୍ଷର ଲେଖିବାରେ, ବନାନଶୁଦ୍ଧି କରିବାରେ ଏଥର ତା'ର ଘଣ୍ଟା ଘଣ୍ଟା ବିତିଗଲା । କ୍ରମଶଃ ସେ ଲାଟିନ୍ ଭାଷା ଶିଖିବାକୁ ଆରମ୍ଭକଲା । ଲାଟିନ୍ ବ୍ୟାକରଣ ଘୋଷିବା ଯେ କି କଷ୍ଟକର କଥା, ପଢ଼ିବା ଲୋକହିଁ ତା' ଜାଣେ । ତଥାପି ସେ ଭାବିଲା, ''ମୁଁ ମେୟରଙ୍କର ଝିଅ, ମୋତେ ସେଥିପାଇଁ ଯୋଗ୍ୟ ହେବାକୁ ପଡ଼ିବ; ତା'ହେଲେ ଯାଇ ବାପା ମୋତେ ଭଲପାଇବେ ।''

ଦୁଃଖ ଓ ଲାଞ୍ଛନା ଭିତରେ, ନିଃସଙ୍ଗ ନୀରବତା ଭିତରେ ଏଲିଜାବେଥ୍‌ର ଦିନ ବିତିବାକୁ ଲାଗିଲା । ଫର୍‌ଫ୍ରେଙ୍କ ପ୍ରତି ଅନ୍ତରରେ ଯେଉଁ ଅନୁରାଗକଳିକାଟି ଦେଖାଦେଇଥିଲା, ସେ ତାକୁ ଦଳିଚକଟି ନଷ୍ଟ କରିଦେବାକୁ ବସିଲା । ତା'ର ମନେହେଲା, ଏ ଗୋଟାଏ ଏକତରଫା କଥା; ଏଭଳି ଭଲପାଇବା ଅନୁଚିତ, ଅବିବେକୀପଣିଆ ହେବ ।

ଶୀତ ପଡ଼ିଯାଇଥାଏ । ସବୁଦିନ ପରି ସେଦିନ ମଧ୍ୟ ମାଆଙ୍କ କବରରେ ଦୁଇଟି ଫୁଲ ଦେଇ ଆସିବ ବୋଲି ସେ ଘରୁ ବାହାରିପଡ଼ିଲା । ଗିର୍ଜା ହତା ଫାଟକ ପାଖରେ ପହଞ୍ଚି ସେ ଦେଖିଲା, ଆରପଟ ରାସ୍ତାଦେଇ ଫର୍‌ଫ୍ରେ ଚାଲିଯାଉଛନ୍ତି । ଯାଉ ଯାଉ ନିଜ ପକେଟ ବହିରେ ସେ କ'ଣ ଟିକିଏ ଲେଖିଦେଇ ତା ଆଡ଼କୁ ଥରଟାଏ ଚାହିଁଦେଲେ । ତାଙ୍କୁ ଦେଖିପାରିଲେ କି ନା କହିହେଉନାହିଁ; କିନ୍ତୁ ତା ପ୍ରତି କୌଣସି ଦୃଷ୍ଟି ନଦେଇ ସେ ସେଠାରୁ ଚାଲିଗଲେ । ଏଲିଜାବେଥ୍‌ର ଦୁଃଖୀ ହୃଦୟଟା ଆହୁରି ଦୁଃଖରେ ସଢ଼ିପଡ଼ିଲା । ମାଆଙ୍କ କବର ପାଖରେ

ବସିପଡ଼ି ସେ କଇଁକଇଁ ହୋଇ କାନ୍ଦିଉଠିଲା, ତୁମ ସହିତ ମୋର ବି ମରଣ ହୋଇଯାଇଥିଲେ କେଡ଼େ ଭଲ ନହୋଇଥାନ୍ତା ମାଆ !!''

କାନ୍ଦୁ କାନ୍ଦୁ ସେ ଅନୁଭବ କଲା, କିଏ ଯେପରି ତା ପାଖରେ ଠିଆହୋଇ ତାକୁ ଚୋଳିଧରୁଛନ୍ତି । ସେ ମୁଣ୍ଡ ଟେକି ଚାହିଁଲା । ଦେଖିଲା ଜଣେ ସ୍ତ୍ରୀଲୋକ ତା ପାଖରେ ନଇଁପଡ଼ିଛନ୍ତି । ସେ ପ୍ରାୟ ତା'ରି ବୟସର ହେବେ; କିନ୍ତୁ ତାଙ୍କର ଲୁଗାପଟା ଖୁବ୍ ସୁନ୍ଦର, ବେଶଭୂଷା ବେଶ୍ ଚମତ୍କାର ।

ଭଦ୍ରମହିଳା ଆଶ୍ୱସନା ଦେଇ କହିଲେ, ''ତୁମେ କାନ୍ଦୁଥିବା ଦେଖି ମତେ ବଡ଼ ଦୁଃଖ ଲାଗିଲା । କ'ଣ ହୋଇଛି ତୁମର ?''

ଦୁଇ ହାତରେ ମୁହଁ ଲୁଚାଇଦେଇ ଏଲିଜାବେଥ୍ କାନ୍ଦ କାନ୍ଦ ହୋଇ କହିଲା, ''ମୁଁ...ମୁଁ କହିପାରିବିନାହିଁ ।''

କିଛି ସମୟ ନୀରବରେ କଟିଯିବା ପରେ ଭଦ୍ରମହିଳା ତା ପାଖରେ ବସିପଡ଼ି କହିଲେ, ''ମୁଁ କିଛିଟା ବୁଝିପାରୁଛି । ସେଇଟି ତୁମ ମାଆଙ୍କ କବର ନା ?''

ସୁସାନ୍‌ଙ୍କ କବର ଆଡ଼େ ଚାହିଁରହି ଭଦ୍ରମହିଳା କବର ପଥରରେ ଲେଖାଯାଇଥିବା ପରିଚୟୋକ୍ତି ପଢ଼ିବାକୁ ଲାଗିଲେ । ତାଙ୍କର ମଧୁର ବ୍ୟବହାରରେ ପ୍ରୀତହୋଇ ଏଲିଜାବେଥ୍ ମନକଥା ଖୋଲିଦେଲା, ''ହଁ, ସେ ମୋର ମାଆ; ଦୁନିଆରେ ସେ ହିଁ ମୋର ଏକମାତ୍ର ନିଜର ଥିଲେ ।''

''କିନ୍ତୁ ତୁମ ବାପା ମିଷ୍ଟର୍ ହେଞ୍ଚାର୍ଡ଼ କ'ଣ ବଞ୍ଚିନାହାନ୍ତି ?''

—ବଞ୍ଚିଛନ୍ତି ।

''ସେ କ'ଣ ତୁମକୁ ଭଲପାଆନ୍ତି ନାହିଁ ?''

ନମ୍ର କଣ୍ଠରେ ଏଲିଜାବେଥ୍ କହିଲା, ''ମୁଁ ତାଙ୍କ ବିରୁଦ୍ଧରେ ଅଭିଯୋଗ କରିବାକୁ ଚାହେଁନି । ମାଆ ବଞ୍ଚିଥିବାତକ ସେ କୌଣସି ଦିନ ମୋ ପ୍ରତି ନିର୍ଦ୍ଦୟ ହୋଇନାହାନ୍ତି । ଏହି କେତେଦିନ ହେଲା ତାଙ୍କ ବ୍ୟବହାର କିନ୍ତୁ ବଡ଼ ଅସହ୍ୟ ବୋଧହେଉଛି ।''

ଦୟାର୍ଦ୍ର ହୋଇ ଭଦ୍ରମହିଳା କହିଲେ, ''ତୁମେ ସବୁକଥା ଖୋଲି କୁହ; ମୋର ମନେହେଉଛି ମୁଁ ତୁମକୁ ଯଥେଷ୍ଟ ସାହାଯ୍ୟ କରିପାରିବି ।''

ଏଲିଜାବେଥ୍ ବିସ୍ମିତ ହୋଇ ଚାହିଁରହିଲା; କହିଲା, ''ମୋ କାହାଣୀ କିଛି ଆନନ୍ଦ ମଧୁର କାହାଣୀନୁହେଁ, ତଥାପି ଆପଣ ଯଦି ପ୍ରକୃତରେ ଜାଣିବାକୁ ଚାହୁଁଛନ୍ତି, ତେବେ କହିଦେବି ।'' ଏଲିଜାବେଥ୍ ନିଜର ସମସ୍ତ ଜୀବନଟା

ମୋଟାମୋଟି ବର୍ଣ୍ଣନା କରିଗଲା । ଭଦ୍ରମହିଳା ଅତି ଆଗ୍ରହରେ ତା କାହାଣୀ ଶୁଣିଗଲେ । ସେ ଚକିତ ବା ବିସ୍ମିତ ହେବାର ଦେଖାଗଲାନାହିଁ । ତାଙ୍କର ଦୟାର୍ଦ୍ର ବ୍ୟବହାରରେ ଏଲିଜାବେଥ୍ ଖୁସିହୋଇଗଲା; କିନ୍ତୁ ଯେତେବେଳେ ଘରକୁ ଫେରିବା କଥା ମନେପଡ଼ିଲା, ସେତେବେଳେ ତା'ର ହୃଦୟ ପୁଣି ଦୁଃଖରେ ପୂର୍ଣ୍ଣ ହୋଇଗଲା । ସେ ମଉଳିଯାଇ କହିଲା, ''ଘରକୁ ଫେରିଯିବାକୁ ମୋର ମୋଟେ ପାଦ ଚଳୁନାହିଁ । ମନ ହେଉଛି କେଉଁଆଡ଼େ ଚାଲିଯାଆନ୍ତି । କିନ୍ତୁ ଯିବି କେଉଁଠିକି ? କରିବି ବା କ'ଣ ?''

ପ୍ରବୋଧନା ଦେଇ ଭଦ୍ରମହିଳା କହିଲେ, ''ବ୍ୟସ୍ତ ହୁଅନି; ଅବସ୍ଥା ଶୀଘ୍ର ବଦଳିଯିବ । ମୁଁ ତ କୁଆଡ଼େ ଦୂରକୁ ଚାଲିଯାଉନାହିଁ । ଶୁଣ, ମୋର ଗୋଟାଏ ପ୍ରସ୍ତାବ ଅଛି । ମୋର ଘରଦ୍ୱାର ଦେଖାଶୁଣା କରିବାଲାଗି, ମୋର ସହଚରୀ ହୋଇ ରହିବାଲାଗି ମୋର ଜଣେ ଭଲ ଲୋକ ଦରକାର । ତୁମେ ଆସି ମୋ ଘରେ ରହିଗଲେ କିପରି ହୁଅନ୍ତା ?''

ଆଖିରେ ଆଖିଏ ଲୁହ ଭରି ଏଲିଜାବେଥ୍ କହିଲା, ''ହଁ, ଭଲ ହେବ; ସତ କହୁଛି ମୁଁ ଚାଲିଆସିବି । ନିଜର ଜୀବିକା ଉପାର୍ଜନ କରିବାଲାଗି ମୁଁ କାମ କରିବାକୁ ପ୍ରସ୍ତୁତ । ଭାବୁଛି, ତେବେ ଯାଇ ବାପା ମୋତେ ଭଲପାଇବେ । କିନ୍ତୁ ଆପଣ ରହୁଛନ୍ତି କେଉଁଠି ?''

''ଏଇଠି, ଏହି କାଷ୍ଟରବ୍ରିଜ୍‌ରେ; ଆଜି ଦିନ ବାରଟା ବେଳଠାରୁ ମୁଁ ଏହିଠାରେ ରହିଯିବି ।'' ଏଲିଜାବେଥ୍‌ର ବିସ୍ମୟ ଦୂରକରି ଭଦ୍ରମହିଳା ସହାସବଦନରେ କହିଚାଲିଲେ, ''ମୁଁ ଯେଉଁ ଘରଟାରେ ରହିବାକୁ ଯାଉଛି, ସେ ଘରଟାର ନାମ ହେଉଛି 'ହାଇପ୍ଲେସ୍ ହଲ୍' । ମାର୍କେଟ ପାଖରେ ଗୋଟାଏ ପୁରୁଣା ପଥରକୋଠା ଦେଖିଥିବ, ସେଇଠି । ତା'ହେଲେ ପ୍ରସ୍ତାବ ରହିଲା, ତୁମେ ବିଚାରକରି କାଲି ସକାଳେ ପୁଣି ଏଇଠି ଦେଖାହେଲେ କହିବ ।''

ଗୋଟାଏ ଦୁର୍ବିସହ ପରିସ୍ଥିତିର ଏପରି ଏକ ଆଶୁପରିବର୍ତ୍ତନ ହେବାକୁ ଯାଉଛି ଦେଖି ଏଲିଜାବେଥ୍‌ର ଆଖି ଝଲସିଉଠିଲା । ସେ ଆନନ୍ଦରେ ଭଦ୍ରମହିଳାଙ୍କ ପ୍ରସ୍ତାବରେ ହଁ ଭରିଦେଲା । ତାଙ୍କ ପାଖରୁ ବିଦାୟ ନେଇ ଚାଲିଆସିବା ପରେ ତାଙ୍କ ବିଷୟରେ ଭାବି ଭାବି, ତାଙ୍କ ବାସଗୃହର ନକ୍ସା ଆଙ୍କି ଆଙ୍କି ଓ ତାଙ୍କ ପାଖରେ ରହିବାର କେତେ କ'ଣ ସମ୍ଭାବନା ଥାଇପାରେ; ସେ ବିଷୟରେ କଳ୍ପନାଜଳ୍ପନା କରି କରି ଏଲିଜାବେଥ୍‌ର ସକାଳ ବେଳାଟା କଟିଗଲା ।

ଉପରବେଳା ସେ ବାହାରିଲା ସହର ଭିତରକୁ ଯାଇ କିଛି ଜିନିଷପତ୍ର କିଣାକିଣି କରିବାକୁ । ଅକ୍ଟୋବର ମାସ, ଦିନ ଛୋଟ ହୋଇ ଆସୁଥାଏ । ବଜାରରେ କିଣାକିଣି ଶେଷ କରିବା ବେଳକୁ ସୂର୍ଯ୍ୟ ଅସ୍ତ ହେବା ଉପରେ । ବଜାରକୁ ଯେତେବେଳେ ଆସିଛି ଏହି ସୁଯୋଗରେ ହାଇପ୍ଲେସ୍ ହଲ୍‌ର ଅନ୍ତତଃ ବାହାରଟା ଟିକିଏ ଦେଖିଆସିବି ଭାବି ସେ ସେହି ଘର ଆଡ଼କୁ ଚାଲିଗଲା । ଯାଇ ଦେଖିଲା, ସେ ଘରଟି ଗୋଟିଏ ନୀଳିପଥର ତିଆରି ସୁନ୍ଦର ସୁଶୋଭିତ ଉଚ୍ଚ କୋଠାଘର, ଅବଶ୍ୟ ଆକାରରେ ବିଶେଷ ବଡ଼ ନୁହେଁ । ଉପର ମହଲାକୁ ଚାହିଁଲା । ଝରକା ଦେଇ ଉଜ୍ଜ୍ୱଳ ଆଲୋକରେଖା ଝରିପଡୁଥିଲା । ଭଦ୍ରମହିଳା ବୋଧହୁଏ ତାଙ୍କ କହିବା ଅନୁଯାୟୀ ବାରଟା ବେଳୁ ଆସି ସେ ଘରେ ରହିଗଲେଣି ।

ସ୍ଥାନଟା ଦେଖିସାରି ଏଲିଜାବେଥ୍ ଗୋଟିଏ ସରୁ ଗଳିରାସ୍ତା ଦେଇ ଘରକୁ ଫେରୁଛି, ଶୁଣିଲା ବିପରୀତ ଦିଗରୁ କେହି ଜଣେ ଲୋକ ଆସୁଥିବାର ଜୋତା ଶବ୍ଦ ଶୁଭୁଛି । ଏପରି ଏକ ନିର୍ଜନ ସ୍ଥାନରେ ପୁଣି ରାତିଟାରେ ତାକୁ ଏକା ଦେଖିଲେ କେହି କିଛି ଭାବିପାରେ ମନେକରି ସେ ଚଟ୍‌କରି ଗୋଟାଏ ଘରର ଦ୍ୱାରବନ୍ଧ ନିକଟରେ ଲୁଚିଗଲା । ଲୋକଟା ତାକୁ ଅତିକ୍ରମ କରି ଚାଲିଯିବା ପର୍ଯ୍ୟନ୍ତ ସେ ସେଠାରେ ଅପେକ୍ଷା କରି ରହିଲା । ସେ ଲୋକ ଜଣକ ସିଧା ଚାଲିଗଲେ ହାଇପ୍ଲେସ ହଲ୍‌କୁ ଏବଂ ଦ୍ୱାରପାଖରେ ଠିଆହୋଇ କବାଟରେ ହାତମାରିଲେ । ଝରକା ଦେଇ ଝରିଆସୁଥିବା ଆଲୋକ ଯାଇ ଠିକ୍ ତାଙ୍କ ମୁହଁଉପରେ ପଡ଼ିଗଲା ଓ ସ୍ପଷ୍ଟ ଚିହ୍ନି ହୋଇଗଲା ଯେ ସେ ହେଉଛନ୍ତି ସ୍ୱୟଂ ମାଇକେଲ୍ ହେଞ୍ଚାର୍ଡ଼ !!

ଏଲିଜାବେଥ୍ କିନ୍ତୁ ଏପରିଭାବରେ ଲୁଚି ରହିଥିଲା ଯେ, ସେ ଏ ଦୃଶ୍ୟର କୌଣସି ଅଂଶ ବି ଦେଖିପାରିଲାନାହିଁ । ଜଣେ ଚାକର ଦ୍ୱାର ଖୋଲିଦେବା ସଙ୍ଗେ ସଙ୍ଗେ ହେଞ୍ଚାର୍ଡ଼ ଘର ଭିତରକୁ ଚାଲିଗଲେ । ମେୟର ହେଞ୍ଚାର୍ଡ଼ଙ୍କର ସେ ଘରେ କି କାମ ଥିଲା କେଜାଣି, ସେଠାରେ ସେ ବେଶି ସମୟ ରହିଲେନାହିଁ; ଏଲିଜାବେଥ୍ ଆସି ଘରେ ପହଞ୍ଚିବାର ଅଳ୍ପ କିଛି ସମୟ ମଧ୍ୟରେ ସେ ବି ଘରକୁ ଫେରିଆସିଲେ । ଏଲିଜାବେଥ୍ ସ୍ଥିର କରିସାରିଥାଏ ସେହି ରାତିରେହିଁ ବାପାଙ୍କର ମତାମତ ନେଇନେବ । ତେଣୁ ସେ ବାପାଙ୍କର ଫେରିବା ବାଟକୁ ଚାହିଁ ବୈଠକଖାନାରେ ଅପେକ୍ଷା କରିଥିଲା । ହେଞ୍ଚାର୍ଡ଼ ଆସି ପହଞ୍ଚିବାମାତ୍ରେ ସେ ପଚାରିଦେଲା, ''ମୋର ଏ ଘରୁ ଚାଲିଯିବାରେ ଆପଣଙ୍କର ଆପତ୍ତି ଅଛି, ବାପା ?''

ବିସ୍ମିତ ହୋଇ ହେଞ୍ଚାର୍ଡ଼ କହିଲେ, ''ନା, ସେମିତି କିଛି ନାହିଁ, ତେବେ ତୁ ଯିବୁ କୁଆଡ଼େ ?''

ଏଲିଜାବେଥ୍ ଭାବିଲା, ବାପାଙ୍କର ଯଦି ତା ଉପରେ କିଛି ଶ୍ରଦ୍ଧାନାହିଁ, ତେବେ ଏତେ ଟିକିନିଖି ବିବରଣୀ ଦେବାର କ'ଣ ବା ଦରକାର ? ତେଣୁ ସେ କେବଳ ଏତିକି କହିଲା, ''ଜଣେ ଭଦ୍ରମହିଳାଙ୍କ ଘରେ କାମଦାମ ପରିଚାଳନା କରି ଓ ତାଙ୍କ ସହଚରୀ ହୋଇ ରହିବାଲାଗି ମୋତେ ଗୋଟାଏ ସୁଯୋଗ ମିଳିବାର ଅଛି ।''

''ନିଶ୍ଚିତରେ ଚାଲିଯାଇପାରୁ, ତେବେ ସେଭଳି କାମରୁ ଦରମା ଯାହା ମିଳିବ ସେଥିରେ ଚଳିବା ତ ତୋ ପକ୍ଷରେ ସୁବିଧା ହେବନାହିଁ । ମୁଁ ତୋ ନାଆଁରେ ଗୋଟାଏ ନିୟମିତ ଭତ୍ତା ଖଞ୍ଜିଦେବି; ତୁ ତୋର ସ୍ୱାଧୀନଭାବରେ ଚଳିଯାଇପାରିବୁ ।''

ତାଙ୍କ କଥାରୁ ମନେହେଲା, ସତରେ ଏପରି କିଛି ଗୋଟାଏ ବ୍ୟବସ୍ଥା ଯଦି ହୋଇଯାଇପାରନ୍ତା, ତେବେ ସେ ତା ବୋଝରୁ ଅବ୍ୟାହତି ପାଆନ୍ତେ । ଏଲିଜାବେଥ୍ ଦେଖିଲା, ସେ ଘରୁ ଚାଲିଯିବା ନେଇ ବାପାଙ୍କ ସହିତ ଗୋଟିଏ ରାଜିନାମା ହୋଇଗଲା । ଏଥର ସେ ଉକ୍ତ ଭଦ୍ରମହିଳାଙ୍କ ନିଷ୍ପତ୍ତି ଶୁଣିବା ଲାଗି ଅପେକ୍ଷା କରି ରହିଲା । ତା ପରଦିନ ଦଶଟାବେଳେ ସେ ଯେତେବେଳେ ଗିର୍ଜାକୁ ଯିବାକୁ ବାହାରିଲା, ମନେ ମନେ ଭାବିଲା ସେ ଭଦ୍ରମହିଳା ବୋଧହୁଏ ଗତ ରାତିରେ କିଛି ଗୋଟାଏ ନିଷ୍ପତ୍ତି କରିସାରିଥିବେ । ସତକୁ ସତ ଗିର୍ଜାରେ ପହଞ୍ଚି ସେ ଦେଖିଲା, ଭଦ୍ରମହିଳା କେତେବେଳୁ ଆସି ତା ପାଇଁ ଅପେକ୍ଷା କରିଛନ୍ତି । ତାକୁ ଦେଖୁ ଦେଖୁ ସେ ହସି ହସି ପାଖକୁ ଚାଲିଆସିଲେ ଏବଂ କୁଶଳ ସମାଚାର ଆଦାନ-ପ୍ରଦାନ ପରେ ସେ ପଚାରିଲେ, ''କ'ଣ ନିଷ୍ପତ୍ତି କଲ ?''

ଏଲିଜାବେଥ୍ ଆଗ୍ରହରେ ଜଣାଇଦେଲା, ''ହଁ, ମୁଁ ନିଷ୍ପତ୍ତି କରିସାରିଛି ।''

''ବାପା ରାଜି ଅଛନ୍ତି ?''

''ହଁ ।''

''ତା'ହେଲେ ଆଜି ଚାଲିଆସିଲେ କିପରି ହୁଅନ୍ତା ? ସତରେ ଘରଟାରେ ମୋର କେହି ନାହିଁ, ବଡ଼ ଏକାଟିଆଟା ଲାଗୁଛି ।''

''ଭାବୁଛି, ଆଜି ଚେଷ୍ଟା କଲେ ଚାଲିଆସିପାରିବି ।''

ଠିକ୍ ସେତିକିବେଳେ ଶୁଣାଗଲା ଗିର୍ଜା ଆରପଟେ କିଏସେ ଦୁଇଜଣ ଲୋକ ଫସଲ ଓ ଗହମର ଦରଦାମ୍ ବିଷୟରେ ଆଲୋଚନା ଚଳାଇଛନ୍ତି । ଭଦ୍ରମହିଳା ଆଗ୍ରହରେ ସେଆଡ଼କୁ ଟିକିଏ କାନେଇବା ପରେ ଏଲିଜାବେଥ୍‌କୁ ପଚାରିଲେ, ''କିଏସେ କଥା ହେଉଛନ୍ତି ?''

''ଜଣେ ହେଉଛନ୍ତି ମୋ ବାପା, ଆଉ ଜଣକ କିଏ କେଜାଣି ?''

''ସତେ ନା !'' କହି ପୁଣି କିଛି ସମୟ ତେଣିକି କାନେଇବା ପରେ ସେ ପଚାରିଲେ, ''କେଉଁଠିକି ଚାଲିଯାଉଛ ବାପାଙ୍କୁ ସେ କଥା କହିଛ ?''

''ନାଁ, ଭାବିଛି ପ୍ରଥମେ ଚାଲିଆସିଲା ପରେ ଅନ୍ୟ କଥା; ଅବ୍ୟବସ୍ଥିତ ଚିତ୍ତ ଲୋକଙ୍କର ଘଡ଼ିକେ ଗୋଟାଏ କଥା...ତେଣୁ...।''

''ଠିକ୍ କହିଛ । ହଁ, ଆଉ ଗୋଟାଏ କଥା । ମୁଁ ଏପର୍ଯ୍ୟନ୍ତ ତୁମକୁ ମୋ ନାଆଁ କହିନାହିଁ । ମୋ ନାଁ କୁମାରୀ ଟେମ୍ପଲ୍‌ମ୍ୟାନ୍ ।'' କହୁ କହୁ ତାଙ୍କ ମୁହଁରେ ବନ୍ଧୁସୁଲଭ ହସ ଫୁଟିଉଠିଲା । ଶେଷରେ ସେ କହିଲେ, ''ବର୍ତ୍ତମାନ ପାଇଁ ବିଦାୟ ଦିଅ; ମୁଁ ତାହାହେଲେ ଆଜି ସନ୍ଧ୍ୟାବେଳକୁ ତୁମ ଆସିବା ଲାଗି ଅପେକ୍ଷା କରିଥିବି । ଛଅଟା ସୁଦ୍ଧା ଚାଲିଆସିବ ।''

କିନ୍ତୁ ହେଞ୍ଚାର୍ଡ଼ ଭାବିନଥିଲେ ଯେ ଏଲିଜାବେଥ୍ ଜେନ୍ ଏତେ ଶୀଘ୍ର ତାଙ୍କୁ ଛାଡ଼ି ଚାଲିଯିବ । ସେଦିନ ଉପରବେଳା ଘରକୁ ଫେରି ସେ ଯେତେବେଳେ ଦେଖିଲେ ଯେ ଏଲିଜାବେଥ୍‌କୁ ନେବା ଲାଗି ଦୁଆରେ ଗୋଟାଏ ଘୋଡ଼ାଗାଡ଼ି ଠିଆ ହୋଇଛି, ସେତେବେଳେ ସେ ଅତ୍ୟନ୍ତ ବିସ୍ମିତ ହୋଇଗଲେ । ତାଙ୍କ କଥା ଶୁଣି ଏଲିଜାବେଥ୍ କହିଲା, ''କିନ୍ତୁ ବାପା, ଆପଣ ତ କହିଥିଲେ ଯେ ମୁଁ ନିଶ୍ଚିତରେ ଚାଲିଯାଇପାରେ !''

''ମୁଁ ଭାବିଥିଲି ତୁ ଆସନ୍ତା ମାସ କିମ୍ବା ଆସନ୍ତା ବର୍ଷ କଥା କହୁଛୁ । କିନ୍ତୁ ଦେଖୁଛି ତୁ ଏଇଲାଗେ ଚାଲିଯିବା ଲାଗି ବ୍ୟସ୍ତ । ତୁ ଭାବୁଛୁ, ତୋ ପାଇଁ ଏତେ କଷ୍ଟ ସ୍ୱୀକାର କରି, ଏତେ ହଇରାଣ ହରକତ ହୋଇ ମୁଁ ତୋଠାରୁ ଶେଷରେ ଏଇ ବ୍ୟବହାର ପାଇବି ବୋଲି ଆଶା କରିଥିଲି ?''

କାନ୍ଦ କାନ୍ଦ ହୋଇ ଏଲିଜାବେଥ୍ କହିପକାଇଲା, ''ହାୟ, ବାପା ! ଆପଣ ଫେର୍ ମୁହଁରେ ଏକଥା କହିପାରୁଛନ୍ତି ? ଏଇଟା ଆପଣଙ୍କର ଅନ୍ୟାୟ ବାପା !''

''ଠିକ୍ ଅଛି, ଠିକ୍ ଅଛି; ତୋର ଯାହା ଇଚ୍ଛା ତା' କର ।'' କ୍ରୁଦ୍ଧ ବିକ୍ଷୁବ୍ଧ କଣ୍ଠରେ ଏତକ ଶୁଣାଇଦେଇ ସେ ଭିତରକୁ ଚାଲିଗଲେ । ଏଲିଜାବେଥ୍‌ର

ସବୁତକ ଜିନିଷ ତା କୋଠରିରୁ ଆସିପାରିନଥାଏ । ତା ଜିନିଷ ଆଦି ଦେବାରେ ସାହାଯ୍ୟ କରିବା ଲାଗି ସେ ତା କୋଠରିକୁ ଗଲେ । ପୂର୍ବରୁ ସେ କୌଣସି ଦିନ ତା କୋଠରିକୁ ଯାଇନଥିଲେ । କୋଠରି ଭିତରର ଜିନିଷଗୁଡ଼ାକୁ ଚାହିଁ ଦେଇ ସେ ବିସ୍ମିତ ହୋଇଗଲେ । ଯୋଗ୍ୟତା ଅର୍ଜନ କରିବା ଲାଗି ସେ କେତେ ଚେଷ୍ଟା ନକରିଛି ସତେ ! ସେ ତା ବହିଗୁଡ଼ାକ ଖେଳାଇ ପକାଇଲେ, ମାନଚିତ୍ରଗୁଡ଼ାକ ଖୋଲି ଆଖି ବୁଲାଇ ଗଲେ । ତା'ର କଲମ, କାଗଜ, ଖାତାପତ୍ର ସବୁ ଦେଖୁ ଦେଖୁ ତାଙ୍କର ଅନ୍ତର ଭିତରଟା କାନ୍ଦିଉଠିଲା । ତା ପାଖକୁ ଚାଲିଯାଇ ସେ ଆର୍ଦ୍ରକଣ୍ଠରେ କହିଉଠିଲେ, ''ଶୁଣ ମାଆ, ତୁ ମୋତେ ଛାଡ଼ି ଚାଲିଯାଆନା ।'' ସେ କିଛିଦିନ ହେଲା ତାକୁ ନାଆଁ ଧରି ଡାକିବା ଛାଡ଼ିଦେଇଥାଆନ୍ତି । ସେ ଆବେଗଭରା କଣ୍ଠରେ କହିଚାଲିଲେ, ''ମୁଁ ତୋ ପ୍ରତି ନିର୍ଦ୍ଦୟ ହୋଇଥାଇପାରେ; କିନ୍ତୁ ତା'ର ଗୋଟାଏ କାରଣ ଅଛି । ତୋ ପାଇଁ ମୁଁ ଅନେକ ଦୁଃଖ ସହିଛି ।''

ଉତ୍କଣ୍ଠିତା ହୋଇ ଏଲିଜାବେଥ୍ ପଚାରିଉଠିଲା, ''ମୋ ପାଇଁ !...ମୁଁ ଆପଣଙ୍କର କି କ୍ଷତି କରିଛି, ବାପା ?''

''ସେସବୁ ଏଇନେ ଖୋଲି କହିପାରିବିନାହିଁ । କିନ୍ତୁ ତୁ ଯଦି ଚାଲିନଯାଇ ମୋ ପାଖରେ ମୋର ଝିଅ ପରି ରହିବୁ, ତେବେ ଉପଯୁକ୍ତ ସମୟରେ ସବୁ କଥା ଖୋଲି କହିବି ।''

ଏ ପ୍ରସ୍ତାବଟା ପୂର୍ବରୁ ମିଳିଥିଲେ ପରିସ୍ଥିତିଟା ବୋଧହୁଏ ଅନ୍ୟପ୍ରକାର ହୋଇପାରିଥାଆନ୍ତା । କିନ୍ତୁ ସେତେବେଳକୁ ଅନେକ ବିଳମ୍ବ ହୋଇସାରିଥିଲା । ଝିଅ ସେତେବେଳକୁ ତା'ର ସମସ୍ତ ଯୋଜନା ପ୍ରସ୍ତୁତ କରିସାରିଥିଲା; ତା ମନ ଯାଇ ବିଚରଣ କରୁଥିଲା ହାଇପ୍ଲେସ୍ ହଲ୍‌ରେ । ଯଥାସମ୍ଭବ ନମ୍ର ମଧୁର କଣ୍ଠରେ ସେ କହିଲା, ''ବର୍ତ୍ତମାନ ଚାଲିଯିବାହିଁ ମୋ ପକ୍ଷରେ ମଙ୍ଗଳକର ହେବ, ବାପା ! ମୋତେ ବିଶ୍ୱାସ କରନ୍ତୁ, ମୁଁ କୌଣସି ଦୂର ଗାଆଁକୁ ଚାଲିଯାଉନାହିଁ । ଆପଣ ଯଦି ପ୍ରକୃତରେ ମୋତେ ଲୋଡୁଥାଆନ୍ତି, ତେବେ ମୁଁ ଅଚିରେ ଆପଣଙ୍କ ପାଖକୁ ଫେରିଆସିବି ।''

''ଦୂରକୁ ଚାଲିଯାଉନୁ ?...ତା ହେଲେ ତତେ କେଉଁ ଠିକଣାରେ ଚିଠି ଦେଲେ ତୁ ପାଇବୁ ?''

''ମୁଁ ଏହି ସହରରେ ରହିବି, ହାଇପ୍ଲେସ୍ ହଲ୍‌ରେ ।''

''କେଉଁଠି ?''—ହେଞ୍ଚାର୍ଡ଼ ଚକିତ ହୋଇଗଲେ ।

ଏଲିଜାବେଥ୍ ଜେନ୍ ତା ଠିକଣାଟି ପୁଣି ଥରେ କହିଦେଲା । ହେଞ୍ଚାର୍ଡ଼ଙ୍କ ପାଟିରୁ କଥା ବାହାରିଲାନାହିଁ । ସେ ସ୍ତମ୍ଭୀଭୂତ ହୋଇ ଠିଆହୋଇଥାନ୍ତି, ଏଲିଜାବେଥ୍ ଗାଡ଼ିରେ ବସିପଡ଼ି ଗାଡ଼ିବାଲାକୁ କହିଲା, ''ହାଇପ୍ଲେସ୍ ହଲ୍‌କୁ ଚାଲ ।''

## ଆଠ

ହେଞ୍ଚାର୍ଡ଼ଙ୍କର ସେହି ଚକିତ ସ୍ତମ୍ଭୀଭୂତ ଅବସ୍ଥାର କାରଣ ଜାଣିବାକୁ ହେଲେ, ପୂର୍ବରାତିର ଘଟଣା ବିଷୟରେ ଆଉ ଟିକିଏ ଜାଣିବା ଆବଶ୍ୟକ ।

ସେଦିନ କ'ଣ କିଣାକିଣି କରିବା ଲାଗି ଏଲିଜାବେଥ୍ ଜେନ୍ ବଜାରକୁ ଚାଲିଯିବା ପରେ ହେଞ୍ଚାର୍ଡ଼ଙ୍କ ପାଖରେ ଖଣ୍ଡେ ଚିଠି ଆସି ପହଞ୍ଚିଲା । ପରିଚିତ ହସ୍ତାକ୍ଷରରେ ଠିକଣା ଲେଖାଯାଇଛି ଦେଖି ସେ ଅତ୍ୟନ୍ତ ବିସ୍ମିତ ହୋଇଗଲେ । ଚିଠିଟା ଜେରେସୀର ସେହି ଯୁବତୀଙ୍କ ପାଖରୁ ଆସିଥିଲେ ମଧ୍ୟ ଡାକରେ ଆସିନଥିଲା; କେହି ଜଣେ ପତ୍ରବାହକ ଆଣି ଦେଇଯାଇଥିଲା । ସେଥିରୁ ସ୍ପଷ୍ଟ ହୋଇଗଲା ଯେ ସେ ଆଉ ଜେରେସୀରେ ନାହାନ୍ତି, ଏହି ନିକଟରେ କେଉଁଠି ରହୁଛନ୍ତି—ସମ୍ଭବତଃ ଏହି କାଷ୍ଟରବ୍ରିଜ୍ ସହରରେହିଁ ଅଛନ୍ତି । ହେଞ୍ଚାର୍ଡ଼ ଆତୁର ହୋଇ ଚିଠିଟା ଖୋଲି ପକାଇଲେ ଏବଂ ବିସ୍ମୟାଭିଭୂତ ହୋଇ ପଢ଼ିଚାଲିଲେ—

''ପ୍ରିୟ ଶ୍ରୀଯୁକ୍ତ ହେଞ୍ଚାର୍ଡ଼,

ବିସ୍ମିତ ହେବନାହିଁ—ମୁଁ କାଷ୍ଟରବ୍ରିଜ୍‌ରେ ରହିବା ଲାଗି ଚାଲିଆସିଛି । କେତେଦିନ ରହିବି କହିପାରୁନାହିଁ; ତାହା ଅନ୍ୟ ଜଣକ ଉପରେ ନିର୍ଭର କରୁଛି—ସେ ହେଉଛନ୍ତି ଜଣେ ପୁରୁଷ, ଜଣେ ବ୍ୟବସାୟୀ ଓ ଜଣେ ମେୟର, ଯାହାଙ୍କର କି ମୋ ହୃଦୟ ଉପରେ ପ୍ରଥମ ଅଧିକାର ରହିଛି ।

ଘଟଣାଟା ବୁଝାଇଦିଏ । ମୋ ମାଈଁ ଶ୍ରୀମତୀ ଟେମ୍ପଲ୍‌ମ୍ୟାନ୍‌ଙ୍କର ଅଗାଧ ସମ୍ପତ୍ତି ଥିଲା; ସେ ଜଣେ ବ୍ୟାଙ୍କ ମାଲିକଙ୍କୁ ବିବାହ କରିଥିଲେ । ଅଳ୍ପ ଦିନ ତଳେ ମାଈଁଙ୍କର ମୃତ୍ୟୁ ହୋଇଗଲା, କିନ୍ତୁ ମୃତ୍ୟୁ ପୂର୍ବରୁ ସେ ମୋ ନାଆଁରେ ବେଶ୍ କିଛି ସମ୍ପତ୍ତି ଲେଖିଯାଇଛନ୍ତି । ସୁତରାଂ ମୁଁ ଆଉ ଅଭାବରେନାହିଁ । ଦେଖିଲି କାଷ୍ଟରବ୍ରିଜ୍‌ରେ ରହିଲେ ଆରାମରେ ରହିପାରିବି । ତୁମେ ଯଦି ମୋତେ ଦେଖିବାକୁ ଇଚ୍ଛା କର ତେବେ ଅନ୍ତତଃ ମୋ ଘରକୁ ଆସିବାରେ କୌଣସି ଅସୁବିଧା ହେବନାହିଁ ଭାବି ମୁଁ ଏଠାରେ ହାଇପ୍ଲେସ୍ ହଲ୍‌ଟି ଭଡ଼ା ନେଇଛି ।

ତୁମର ସେ ଯେଉଁ ସ୍ତ୍ରୀ, ଯାହାଙ୍କୁ ତୁମେ ବହୁଦିନ ପୂର୍ବେ ମୃତ ବୋଲି ଧରିନେଇଥିଲ, ତାଙ୍କର ପ୍ରକୃତରେ ପରଲୋକ ହୋଇଗଲା ବୋଲି ଶୁଣିଲି । ହାୟ ବିଚାରୀ ! ଯାହାହେଉ, ଶେଷରେ ତୁମେ ତାଙ୍କ ପ୍ରତି ନ୍ୟାୟୋଚିତ ବ୍ୟବହାର ଦେଖାଇଛ ଜାଣି ଖୁସିହେଲି । ମୋର ବିଶ୍ୱାସ, ସେ ଆଉ ଇହଲୋକରେ ନଥିବା ହେତୁ, ଅତୀତରେ ତୁମେ ମୋ ପାଖରେ ଯେଉଁ ଶପଥ କରିଥିଲ, ସେ ଶପଥ ପାଳନ କରିବାରେ ଆଉ କୌଣସି ଅସୁବିଧାନାହିଁ । ତଥାପି ଏ କାର୍ଯ୍ୟରେ ତରତର ହେବା ଅନୁଚିତ ଜାଣି ମୁଁ ଆସି ଏଠାରେ ରହିଯିବାର ସିଦ୍ଧାନ୍ତ ଗ୍ରହଣ କଲି ।

ଆଉ ଦିନେ ଦୁଇ ଦିନ ମଧ୍ୟରେ ମୁଁ ତୁମ ସହିତ ସାକ୍ଷାତ୍ କରିବାକୁ ସମର୍ଥ ହୋଇପାରିବି । ତଦବଧି ବିଦାୟ... ନମସ୍କାର ।

ଲୁସେଟା ।''

ଚିଠିଟା ପକେଟରେ ପୂରାଇଦେଇ ହେଞ୍ଚାର୍ଡ଼ ଘରୁ ବାହାରିପଡ଼ିଲେ । ମନେ ମନେ କହିଗଲେ, ହଁ, ମୁଁ ତାଙ୍କୁ ନିଶ୍ଚୟ ବିବାହ କରିବି ।' ବିବାହର ମଧୁର ଭାବନାରେ ହୃଦୟ ତାଙ୍କର ଉଲ୍ଲସିତ ହୋଇଉଠିଲା । ଏଲିଜାବେଥ୍ ଜେନ୍ ତାଙ୍କ ନିଜର ଝିଅ ନୁହେଁ ବୋଲି ଜାଣିଦେବା ମୁହୂର୍ତ୍ତରୁ ନୈରାଶ୍ୟର ତିକ୍ତତା ଭିତରେ ତାଙ୍କ ହୃଦୟରେ ଗୋଟାଏ ଶୂନ୍ୟତା ଜାତ ହୋଇଯାଇଥିଲା । ବର୍ତ୍ତମାନ ତାଙ୍କର ମନେହେଲା, ଲୁସେଟାହିଁ ହୃଦୟର ସେ ଶୂନ୍ୟତାକୁ ପୂର୍ଣ୍ଣ କରିଦେଇପାରିବ ।

ବଜାର ଛକଠାକୁ ସରୁ ଗଳି ରାସ୍ତା ଦେଇ ସେ ସିଧା ହାଇପ୍ଲେସ୍ ହଲ୍‌କୁ ଚାଲିଲେ । ସେହି ଗଳି ରାସ୍ତାରେହିଁ ଏଲିଜାବେଥ୍ ଜେନ୍ ଲୁଚିଥିଲା । ହାଇପ୍ଲେସ୍ ହଲ୍ ଭିତରେ ପଶୁ ପଶୁ ଜଣେ ଚାକରଠାରୁ ଶୁଣିଲେ କୁମାରୀ ଟେମ୍ପଲ୍‌ମ୍ୟାନ୍ ଦିନ ତମାମ୍ କାର୍ଯ୍ୟବ୍ୟସ୍ତ ଥିବାରୁ ବର୍ତ୍ତମାନ କ୍ଲାନ୍ତହୋଇ ଶୋଇପଡ଼ିଛନ୍ତି । ଫଳତଃ, ଲୁସେଟାଙ୍କ ସହିତ ସାକ୍ଷାତ୍ କରିବାର ସୁଯୋଗ ନପାଇ ହେଞ୍ଚାର୍ଡ଼ ସଙ୍ଗେ ସଙ୍ଗେ ଘରକୁ ଫେରିଆସିଲେ । ଯଦି ସାକ୍ଷାତ୍ କରିପାରିଥାଆନ୍ତେ, ତେବେ ହୁଏତ ଲୁସେଟା ତାଙ୍କୁ ଏଲିଜାବେଥ୍‌କୁ ଦେଇଥିବା ପ୍ରସ୍ତାବ ବିଷୟରେ କହିଦେଇଥାଆନ୍ତେ ଏବଂ ସେତକ ଜାଣି ଦେଇଥିଲେ ସେ ବୋଧହୁଏ ଭିନ୍ନଭାବରେ ସମସ୍ୟାର ସମ୍ମୁଖୀନ ହୋଇପାରିଥାଆନ୍ତେ ।

ହ, ଏଲିଜାବେଥ୍ ଯାଇ ହାଇପ୍ଲେସ ହଲ୍‌ରେ ଆରାମରେ ରହିଗଲା । ଖୁବ୍ କମ୍ ସମୟ ମଧ୍ୟରେ ତା'ର ମନେହେଲା ସହାସ୍ୟବଦନା, ବନ୍ଧୁବତ୍ସଳା କୁମାରୀ

ଟେମ୍ପଲମ୍ୟାନ୍‌ଙ୍କ ସହିତ ତା'ର ଯେପରି ଅନେକଦିନ ହେଲା ପରିଚୟ ରହିଥିଲା । ଯେଉଁଦିନ ରାତିରେ ସେ ଘରଛାଡ଼ି ଚାଲିଆସିଲା; ହେଞ୍ଚାର୍ଡ଼ ସେଦିନ ଘରେ ଖାଇଲେ । କିନ୍ତୁ ସେଦିନ ଘରର ନିର୍ଜନତାଟାକୁ ସେ ନିଜେ ବି ସ୍ୱୀକାର କରିବାକୁ ପ୍ରସ୍ତୁତ ନଥିଲେ; ଖାଇସାରିବା ପରେ ପରେ ସେ ପୁଣି ଲୁସେଟା କଥା ଭାବିବସିଲେ । ହାଇପ୍ଲେସ୍ ହଲକୁ ଯାଇ ଲୁସେଟାକୁ ଥରେ ଦେଖିଆସିବା ଲାଗି ମନରେ ଗୋଟାଏ ପ୍ରବଳ ଆଗ୍ରହ ଜାଗିଉଠିଲା । ସେ ଚଟ୍‌କରି କୋଟ୍ ପିନ୍ଧି ପକାଇ ସେଠାକୁ ଚାଲିଗଲେ । ଚାକରଟୁ କହିଲେ, ''ମୁଁ ଆସିଛି ବୋଲି ଖବର ଦେ, ''କୁମାରୀ ଟେମ୍ପଲ୍‌ମ୍ୟାନ୍ ବର୍ତ୍ତମାନ ଭାରି ବ୍ୟସ୍ତ ଅଛନ୍ତି । କାଲି ଆସିଲେ ଖୁସିରେ ଦେଖାକରିବେ ।''

ହେଞ୍ଚାର୍ଡ଼ କ୍ଷୁବ୍‌ଧ ହୋଇ ମନେ ମନେ ଭାବିଲେ, ''ସବୁ ସ୍ତ୍ରୀ ସମାନ; ଏମାନେ ବୋଧହୁଏ ପୁରୁଷଙ୍କୁ ଏଇମିତିକା ନଚାନ୍ତି ।'' ଆଗରୁ ଖବର ନ ଦେଇ ଚାଲିଆସିଥିବାରୁ ନାସ୍ତିବାଣୀଟାକୁ ସେ ନୀରବରେ ସହ୍ୟ କରି ଫେରିଆସିଲେ ସତ; କିନ୍ତୁ ମନେ ମନେ ସ୍ଥିର କରିନେଲେ, ତା ପରଦିନ ସେ ଆଉ ଆସିବେନାହିଁ ।

ତା ପରଦିନ ସକାଳେ ଲୁସେଟା ବେଶଭୂଷା ହୋଇ ହେଞ୍ଚାର୍ଡ଼ଙ୍କର ଆଗମନ ଲାଗି ଅପେକ୍ଷା କରି ରହିଲେ । ହେଞ୍ଚାର୍ଡ଼ କିନ୍ତୁ ଗଲେନାହିଁ । ବିଳମ୍ବ ହେବା ଦେଖି ଲୁସେଟା ବ୍ୟସ୍ତ ହୋଇ ପଡ଼ିଲେ । ଖରାବେଳଟା ତାଙ୍କରି ପ୍ରତୀକ୍ଷାରେ କଟିଗଲା, ଉପରବେଳା ବି ସେ ଆସିଲେନାହିଁ । ଲୁସେଟା କିନ୍ତୁ ଏଲିଜାବେଥ୍‌କୁ କହିଲେନାହିଁ ଯେ ସେ ମେୟରଙ୍କ ପ୍ରତୀକ୍ଷାରେ ରହିଛନ୍ତି । ସେଦିନ ଶନିବାର, କାଷ୍ଟରବ୍ରିଜ୍‌ର ହାଟପାଳି । ଦୁଇ ସହଚରୀ ଉପର ମହଲାର ଝରକା ପାଖରେ ବସି ବାହାରର ହାଟ ଗହଳି ଦେଖିବାକୁ ଲାଗିଲେ । ହେଞ୍ଚାର୍ଡ଼ ଚାରିଆଡ଼େ ବୁଲି ଚାଷୀମାନଙ୍କଠାରୁ ଗହମ କିଣିବାରେ ବ୍ୟସ୍ତ; କିନ୍ତୁ ଏତେ ପାଖରେ ଥାଇ ବି ହାଇପ୍ଲେସ୍ ହଲ୍ ଆଡ଼େ ଭୁଲିରେ ବି ଚାହୁଁ ନାହାନ୍ତି । ଲୁସେଟା ଭାବିଲା, ଆଜି ସେ ଭାରି କାର୍ଯ୍ୟବ୍ୟସ୍ତ; ରବିବାରେ ବା ସୋମବାରେ ନିଶ୍ଚୟ ଆସିବେ ।

ରବିବାର ଗଲା, ସୋମବାର ବି ଚାଲିଗଲା; ତଥାପି ହେଞ୍ଚାର୍ଡ଼ ଆସିଲେ ନାହିଁ ଦେଖି ଲୁସେଟା ନିରାଶ ହୋଇଗଲେ । ହେଞ୍ଚାର୍ଡ଼ଙ୍କୁ ଯେ ସେ ଆଉ ପ୍ରେମ କରୁଥିଲେ ତା ନୁହେଁ; ତାଙ୍କ ମନରେ ବିବାହ କରିବାଲାଗି, ବିବାହ ଆଣିଦେଉଥିବା ସୁଖ, ଶାନ୍ତି ଓ ନିରାପତ୍ତା ଉପଭୋଗ କରିବାଲାଗି ଗୋଟାଏ ଗଭୀର ଲାଳସା ଜାଗିଉଠିଥିଲା । ହଠାତ୍ ତାଙ୍କର ମନେହେଲା ବୋଧହୁଏ ଏଲିଜାବେଥ୍ ଜେନ୍

ସେଠାରେ ଥିବାରୁ ସେ ଆସୁନାହାନ୍ତି, ବୋଧହୁଏ ଝିଅ ସାମନାକୁ ଆସିବାକୁ ଇଚ୍ଛା କରୁନାହାନ୍ତି । ତେଣୁ ମଙ୍ଗଳବାର ଦିନ ସକାଳୁ ଏଲିଜାବେଥ୍ ହାତରେ ଗୋଟାଏ ଲମ୍ବା ସଉଦା ତାଲିକା ଧରାଇଦେଇ ସେ ତାକୁ ବଜାରକୁ ପଠାଇଦେଲେ; କହିଲେ, ''ଡେରି ହେଲେ ଚିନ୍ତାନାହିଁ, ଭଲ ଜିନିଷ ଦେଖି ବାଛିବୁଛି କିଣିବ ।'' ଏଲିଜାବେଥ୍ ବଜାରକୁ ଚାଲିଯିବା ପରେ ପରେ ସେ ଖଣ୍ଡିଏ ଚିଠି ଲେଖି ବସିଲେ—

''ପ୍ରିୟ ମାଇକେଲ୍,

ତୁମେ ମୋ ସହିତ ସାକ୍ଷାତ୍ କରିବା ଲାଗି ଆଉ ଆସିଲନାହିଁ ଦେଖି ମୁଁ ବଡ଼ ନିରାଶ ହେଇପଡ଼ିଛି । ବୋଧହୁଏ ଏଠାରେ ତୁମର ଝିଅ ଥିବାରୁ ଆସିବାକୁ କୁଣ୍ଠାବୋଧ କରୁଛ । ତେଣୁ ଆଜି ସକାଳପାଇଁ ମୁଁ ତାକୁ ଅନ୍ୟତ୍ର ପଠାଇଦେଇଛି । ଏଠାରେ ମୋ ପାଖରେ ଆଉ କେହି ନାହାନ୍ତି ।

ଲୁସେଟା ।''

ଚାକର ହାତରେ ହେଞ୍ଚାର୍ଡ଼ଙ୍କ ପାଖକୁ ଚିଠିଟି ପଠାଇଦେଲେ ଏବଂ ସେ ଫେରିବା ପରେ ତାକୁ କହିଲେ, ''ଜଣେ ଭଦ୍ରଲୋକ ଆସିବାର ଅଛି; ସେ ଆସିବା ମାତ୍ରେ ତାଙ୍କୁ ମୋ କୋଠରିକୁ ନେଇଆସିବୁ ।'' ଚାକର ଯାଇ ଫାଟକ ପାଖରେ ଅପେକ୍ଷା କଲା ଏବଂ ଲୁସେଟା ବେଶଭୂଷା ହୋଇ ହେଞ୍ଚାର୍ଡ଼ଙ୍କର ପ୍ରତୀକ୍ଷାରେ ବସିରହିଲେ । ପ୍ରାୟ ଅଧଘଣ୍ଟାକ ପରେ ସେ ଶୁଣିବାକୁ ପାଇଲେ ଯେ ଜଣେ ଆଗନ୍ତୁକ ଫାଟକରେ ହାତମାରି ଡାକୁଛନ୍ତି । ଲୁସେଟା ଆଶାୟିତହୋଇ ଚାହିଁଛନ୍ତି, ଚାକରଟା ଆଗନ୍ତୁକଙ୍କୁ ଆଣି ତାଙ୍କ କୋଠରିରେ ପହଞ୍ଚାଇଦେଲା । କିନ୍ତୁ ସେ ତର ତର ହୋଇ ଉଠିପଡ଼ି ଭଦ୍ରଲୋକଙ୍କୁ ସମ୍ବର୍ଦ୍ଧନା ଜଣାଇବାକୁ ଯାଇ ଦେଖନ୍ତି ତ ସେ ହେଞ୍ଚାର୍ଡ଼ ନୁହନ୍ତି, ଅନ୍ୟ ଜଣେ ଲୋକ—କାଷ୍ଟରବ୍ରିଜ୍‌ର ମେୟରଙ୍କ ଅପେକ୍ଷା ଯଥେଷ୍ଟ କମ୍ ବୟସର ଜଣେ ଶୁଭ୍ର ସୁନ୍ଦର ଯୁବକ । ବିସ୍ମୟାଭିଭୂତ ଲୁସେଟାଙ୍କ ମୁହଁରୁ ବାହାରିପଡ଼ିଲା, ''ଓଃ । ମୁଁ ଭାବିଥିଲି ସେ... ମୁଁ ଅନ୍ୟ ଜଣେ ଭଦ୍ରଲୋକଙ୍କ ଅପେକ୍ଷାରେ ଥିଲି ନା !''

ଯୁବକ ଆଗନ୍ତୁକ ଭୁଲ ସ୍ୱୀକାର କରି ଫେରିଯିବାକୁ ଉଦ୍ୟତ ହୋଇ କହିଲେ, ''କ୍ଷମା କରିବେ, କୁମାରୀ ହେଞ୍ଚାର୍ଡ଼ କେଉଁଠି ଅଛନ୍ତି ବୋଲି ପଚାରୁ ପଚାରୁ ଚାକରଟା ଆଣି ମୋତେ ଆପଣଙ୍କ ପାଖରେ ପହଞ୍ଚାଇଦେଲା । ମୁଁ ବୋଧହୁଏ ଭୁଲ କରି ଏ ଘର ଭିତରକୁ ପଶିଆସିଛି ।''

ଲୁସେଟା ଭଦ୍ରକୋମଳ କଣ୍ଠରେ କହିଲେ, ''ନା, ନା; ଆସିଛନ୍ତି ଯେତେବେଳେ ଆପଣ ଚାଲିଯିବେ କିପରି ? କୁମାରୀ ହେଞ୍ଚାର୍ଡ଼ ଟିକିଏ ବାହାରକୁ ଯାଇଛନ୍ତି, ଏହି ଫେରୁଥିବେ କି କ'ଣ !''

କଥାଟା ଅବଶ୍ୟ ମିଛ । ଅସଲ କଥା ହେଲା, ଲୁସେଟାଙ୍କର ମନଟା ସୁନ୍ଦର ଆଗନ୍ତୁକଙ୍କର ସୁନ୍ଦର ମନୋମୁଗ୍‌ଧକର ରୂପରେ ଟହଲି ଉଠିଥିଲା । ତା'ଛଡ଼ା ସେ ଭାବିଲେ ଯେ ଏତିକିବେଳେ ଯଦି ହେଞ୍ଚାର୍ଡ଼ ଆସନ୍ତି, ତେବେ ସେ ତାଙ୍କୁ ଦେଖାଇଦେବେ ଯେ ହେଞ୍ଚାର୍ଡ଼ ତାଙ୍କୁ ହତାଦର କରୁଥାଇପାରନ୍ତି; କିନ୍ତୁ ତାହା ବୋଲି ସେ ସଙ୍ଗସୁଖ ଲାଭରୁ ବଞ୍ଚିତା ନୁହନ୍ତି ।

ପାଠକେ ଅନୁମାନ କରିସାରିଥିବେ ଯେ ଯୁବକ ଆଗନ୍ତୁକ ଫର୍‌ଫ୍ରେଙ୍କ ବ୍ୟତୀତ ଅନ୍ୟ କେହି ନୁହନ୍ତି । ତାଙ୍କର ଏହି ଅପ୍ରତ୍ୟାଶିତ ଆଗମନ ପଛରେ ରହିଥିଲା ହେଞ୍ଚାର୍ଡ଼ ତାଙ୍କ ପାଖକୁ ଦେଇଥିବା ଖଣ୍ଡିଏ ଚିଠି । ସେ ଚିଠିଟିରେ ହେଞ୍ଚାର୍ଡ଼ ଲେଖିଥିଲେ, ଏଲିଜାବେଥ୍ ଆଉ ତାଙ୍କ ତତ୍ତ୍ୱାବଧାନରେ ରହୁନାହିଁ; ତେଣୁ ଇଚ୍ଛା କଲେ ଫର୍‌ଫ୍ରେ ଏଥର ତା ସହିତ ସାକ୍ଷାତ୍ କରିପାରନ୍ତି । ଏପରି ଏକ ଚିଠି ଲେଖିବାରେ ହେଞ୍ଚାର୍ଡ଼ଙ୍କର ଉଦ୍ଦେଶ୍ୟ ଥିଲା ଯେ ଲୁସେଟା ଯେତେବେଳେ ପାଖକୁ ଆସିଲାଣି, ଏଲିଜାବେଥ୍‌କୁ ଏଥର କୌଣସି ଉପାୟରେ ଦୂରେଇଦେବା ଠିକ୍ ହେବ, ବିଶେଷତଃ ସେ ଲୁସେଟାଙ୍କୁ ବିବାହ କରିବା ପୂର୍ବରୁ ଝିଅର ବିବାହଟା କରାଇଦେଲେ ସବୁ ଅଡୁଆ ତୁଟିଯାଆନ୍ତା ।

ଫର୍‌ଫ୍ରେ କିନ୍ତୁ ଏତେ କଥା ଜାଣିନଥିଲେ । ସେ ତାଙ୍କ ବ୍ୟବସାୟରେ ଯଥେଷ୍ଟ କିଛି ଲାଭ କରିପାରୁଥିବାରୁ ବିବାହ ସକାଶେ ଅନୁକୂଳ ଅବସ୍ଥା ସୃଷ୍ଟି ହୋଇଯାଇଥିଲା । ଏଲିଜାବେଥ୍‌କୁ ପତ୍ନୀରୂପେ ପାଇବାର ମଧୁର ସ୍ୱପ୍ନ ସେ ବହୁଦିନ ପୂର୍ବରୁ ଦେଖିସାରିଥିଲେ । ସୁତରାଂ ହେଞ୍ଚାର୍ଡ଼ଙ୍କ ଚିଠିରୁ ଏଲିଜାବେଥ୍‌ର ବର୍ତ୍ତମାନ ଠିକଣାଟା ଜାଣିଦେବାମାତ୍ରେ ସେ ହାଇପ୍ଳେସ୍ ହଲ୍‌କୁ ଦୌଡ଼ିଆସିଥିଲେ । କିନ୍ତୁ ସେଠାକୁ ଆସୁ ଆସୁ କୁମାରୀ ହେଞ୍ଚାର୍ଡ଼ଙ୍କ ପରିବର୍ତ୍ତେ ସାକ୍ଷାତ୍ ହୋଇଗଲା ଲୁସେଟା ଓରଫ୍ କୁମାରୀ ଟେମ୍ପଲ୍‌ମ୍ୟାନ୍‌ଙ୍କ ସହିତ ।

ଲୁସେଟା ସୁନ୍ଦରୀ, ଲାବଣ୍ୟମୟୀ ଯୁବତୀ । ପୁରୁଷ ସହିତ କିପରି ବ୍ୟବହାର କରି ମନ କିଣିନେବାକୁ ହୁଏ, ସେ ସେଥିରେ ଅନଭିଜ୍ଞା ନଥିଲେ । ଫଳତଃ ସେଦିନ ସକାଳେ ହାଇପ୍ଳେସ୍ ହଲ୍‌ରୁ ବିଦାୟ ନେବା ପୂର୍ବରୁ ଫର୍‌ଫ୍ରେଙ୍କ ମନ ଚୋରି ହୋଇଯାଇଥିଲା; ସେ ଆଉ ସ୍ମରଣ କରିପାରିଲେ ନାହିଁ ଯେ କୁମାରୀ

ହେଞ୍ଚାର୍ଡ଼ଙ୍କ ସହିତ ସାକ୍ଷାତ୍ ନକରୁଣୁ ସେ ସେଠାରୁ ଫେରି ଚାଲିଯାଉଛନ୍ତି । ଶୁଭ୍ର ସୁନ୍ଦର ଯୁବକ ଫର୍‌ଫ୍ରେ ସେ ରୁକ୍ଷ ବୟସ୍କ ହେଞ୍ଚାର୍ଡ଼ଙ୍କ ଅପେକ୍ଷା ଲୁସେଟାଙ୍କର ଅଧିକ କାମ୍ୟ ହୋଇଥିବେ, ଏଥିରେ ଆଉ ସନ୍ଦେହ କରିବାର କିଛି କାରଣନାହିଁ । ତେଣୁ ଫର୍‌ଫ୍ରେ ବିଦାୟ ନେଇ ଚାଲିଯିବାର ପ୍ରାୟ ଦଶମିନିଟ ପରେ ଯେତେବେଳେ ମେୟର ହେଞ୍ଚାର୍ଡ଼ ଆସି ପହଞ୍ଚିଗଲେ, ସେତେବେଳେ ଲୁସେଟା ଚାକର ହାତରେ ଖବର ପଠାଇଦେଲେ ଯେ ତାଙ୍କର ମୁଣ୍ଡ ବିନ୍ଧୁଛି, ବର୍ତ୍ତମାନ ସାକ୍ଷାତ୍ କରିବା ଅବସ୍ଥାରେ ନାହାନ୍ତି । ସେ କାଷ୍ଟରବ୍ରିଜ୍ ଆସିଥିଲେ ହେଞ୍ଚାର୍ଡ଼ଙ୍କର ଆସକ୍ତି ପୁନର୍ଜାଗରିତ କରିବାଲାଗି; ସେ ଉଦ୍ଦେଶ୍ୟ ତାଙ୍କର ପୂରଣ ହୋଇଗଲା । ବର୍ତ୍ତମାନ ଆଉ ସେ ଆସକ୍ତିର ସୁଯୋଗ ନେବାକୁ ବ୍ୟସ୍ତ ନୁହନ୍ତି । ବର୍ତ୍ତମାନ ସେ ଭାବୁଛନ୍ତି, କ'ଣ କରି ଝିଅ ଏଲିଜାବେଥ୍‌କୁ ପାଖରେ ରଖିଲେ ବାପା ହେଞ୍ଚାର୍ଡ଼ଙ୍କୁ ସହଜରେ ଦୂରରେ ରଖିହେବ ।

ଏଲିଜାବେଥ୍ ସଉଦା ଶେଷ କରି ଫେରିଆସିବା ସଙ୍ଗେ ସଙ୍ଗେ ଲୁସେଟା ଶତମୁଖ ହୋଇ ତା'ର ପ୍ରଶଂସା କରିବାକୁ ଲାଗିଲେ ଓ କହିଲେ, ତାଙ୍କର ଇଚ୍ଛା ତାକୁ ସେ ଅନେକ ଦିନ ଧରି ସହଚରୀ କରି ପାଖରେ ରଖିବେ ।

## ନଅ

ଆଉ ଗୋଟାଏ ହାଟପାଳି ପର୍ଯ୍ୟନ୍ତ ଜୀବନଟା ହସଖୁସିରେ କଟିଗଲା । ସେଦିନ ସକାଳେ ସୁନ୍ଦର ଖରା ପଡ଼ିଥାଏ । ଏଲିଜାବେଥ୍ ଜେନ୍‌କୁ ଲୁସେଟା କହିଲେ, ''ଚାଲ, ଟିକିଏ ହାଟଆଡ଼େ ବୁଲିଆସିବା ।'' ହାଟରେ ଆହୁରି ଲୋକଗହଳି ଜମିନଥାଏ । ଦୁଇ ସହଚରୀ ଯାଇ ହାଟକୁ ବିକ୍ରୟପାଇଁ ଆସିଥିବା ଗୋଟିଏ ନୂଆ କୃଷିଯନ୍ତ୍ର ଦେଖି ଅଟକିଗଲେ । ନୂଆ ଯନ୍ତ୍ରଟି ଦେଖିବାକୁ କେତେ ଲୋକ ଆସିଥାନ୍ତି । ଲୁସେଟା ଓ ଏଲିଜାବେଥ୍ ସେଠାରେ ଠିଆହୋଇ ଯନ୍ତ୍ରଟା ଦେଖୁଛନ୍ତି, ହେଞ୍ଚାର୍ଡ଼ ଯାଇ ସେଠାରେ ପହଞ୍ଚିଗଲେ । ପଚାରିଲେ, ''କ'ଣ, ସବୁ ଭଲ ତ ଏଲିଜାବେଥ୍ ଜେନ୍ ?''

ଏପରି କୁଶଳ ସମାଚାର ପଚାରିବା ସତ୍ତ୍ୱେ ହେଞ୍ଚାର୍ଡ଼ଙ୍କ ମୁହଁଟା ବଡ଼ ଗମ୍ଭୀର ଦେଖାଯାଉଥାଏ । ବାପାଙ୍କର ସେ ଗମ୍ଭୀର ମୁହଁ ଦେଖି ଏଲିଜାବେଥ୍ ଶଙ୍କିତ କଣ୍ଠରେ କହିଲା, ''ନମସ୍କାର ବାପା, ମୁଁ ଯେଉଁ ଭଦ୍ରମହିଳାଙ୍କ ଘରେ କାମ କରୁଛି, ଏ ହେଉଛନ୍ତି, ସେହି ଭଦ୍ରମହିଳା, କୁମାରୀ ଟେମ୍ପଲ୍‌ମ୍ୟାନ୍ ।''

ହେଞ୍ଚାର୍ଡ଼ ମୁଣ୍ଡରୁ ଟୋପି ବାହାର କରି ଅଚିହ୍ନା ଲୋକଙ୍କ ପରି ଲୁସେଟାଙ୍କୁ ଗୋଟିଏ ଛୋଟ ପ୍ରଣାମ ଜଣାଇଲେ । ଲୁସେଟା ବି ମୁହଁରେ ଟିକିଏ ହସ ଫୁଟାଇ ପ୍ରତିନମସ୍କାର ଜଣାଇ ଭଦ୍ରତା ଖାତିର୍‌ରେ କହିଦେଲେ, "ଆପଣଙ୍କ ସହିତ ସାକ୍ଷାତ୍ କରି ଖୁସିହେଲି, ମିଷ୍ଟର ହେଞ୍ଚାର୍ଡ଼ ।" ତା' ପରେ ପରେ ପ୍ରସଙ୍ଗ ବଦଳାଇ ଦେଇ କହିଲେ, "ସତରେ ଏଇଟି ଅଦ୍ଭୁତ ଯନ୍ତ୍ର !"

ହେଞ୍ଚାର୍ଡ଼ କହିଲେ, "ହଁ, ନୂଆ ବାହାରିଛି । ଏ ଗୋଟାଏ ଗହମବୁଣା ଯନ୍ତ୍ର ।" ଯନ୍ତ୍ରଟି ବିଷୟରେ ଦୁଇଚାରି ପଦ କଥା କହିଦେଇ ସେ ସେଠାରୁ ବାହାରିଗଲେ; କିନ୍ତୁ ସେ ମୁହଁ ବୁଲାଇବା ପରେ ପରେ ଶୁଣାଗଲା, "ମତେ ତା'ହେଲେ ଦେଖାକରିବାକୁ ମନା କରିଦେଲ, ନା ?" ସ୍ୱରଟା ଏଲିଜାବେଥ୍‌କୁ ଠିକ୍ ତା ବାପାଙ୍କର କଣ୍ଠସ୍ୱର ପରି ଲାଗିଲା; କିନ୍ତୁ ସେ ବିଶ୍ୱାସ କରିପାରିଲା ନାହିଁ ଯେ ତା' ବାପା ଏ କଥା କହିଲେ । କାରଣ ପାଖରେ ଅନ୍ୟ କେହି ଟାଷୀ ନଥିଲେ । ବାପା ତା'ହେଲେ କାହାକୁ କହିଥିବେ ? ଯାହାହେଉ, ଅଳ୍ପ ସମୟ ମଧ୍ୟରେ କାହାର ଗୋଟାଏ ଗୁଣୁ ଗୁଣୁ ଗୀତ ଶୁଣି ତା' ମନରୁ ଏ ପ୍ରହେଳିକା ଦୂରେଇଗଲା । ମନେହେଲା, ଗୀତଟା ସେ ନୂଆ ଯନ୍ତ୍ର ଭିତରୁ ବାହାରୁଛି । ଦୁଇ ସହଚରୀ ବିସ୍ମିତ ହୋଇ ଚାହୁଁ ଚାହୁଁ ଯନ୍ତ୍ର ପଛରେ ନଇଁପଡ଼ିଥିବା ଜଣେ ଲୋକର ପିଠିଟା ଦେଖାଗଲା । ଲୋକଟା ବୋଧହୁଏ ଯନ୍ତ୍ର ତଳେ ନଇଁ ପଡ଼ି ତା' ଭିତର ଅଂଶଗୁଡ଼ାକ ତନ୍ନତନ୍ନ କରି ଦେଖୁଥିଲା । ଲୋକଟି ଯେ କିଏ ସେ ତାହା ଜାଣିବା ଲାଗି ଏଲିଜାବେଥ୍‌କୁ ବେଶି ସମୟ ଲାଗିଲା ନାହିଁ; ଲୁସେଟା ବି ତାଙ୍କୁ ଚିହ୍ନିବାରେ ବିଶେଷ ବିଳମ୍ବ କଲେନାହିଁ । ସେ ହସି ହସି କହିଲେ, "ଏଇଟା ତା'ହେଲେ ଗୋଟିଏ ଗୀତ ଗାଇବା ଯନ୍ତ୍ର ! କି ଅପୂର୍ବ !"

ଏ ମନ୍ତବ୍ୟ ଶୁଣୁ ଶୁଣୁ ନଇଁପଡ଼ିଥିବା ଲୋକଜଣକ ସିଧା ହୋଇ ଠିଆ ହୋଇଗଲେ । ଉଭୟେ ଉଭୟଙ୍କୁ ଚାହିଁଦେବା ପରେ ଲୁସେଟା କହିଉଠିଲେ, "ଆରେ, ଶ୍ରୀଯୁକ୍ତ ଫର୍‌ଫ୍ରେ ଯେ; ନମସ୍କାର ! ଏଇଟି ତା'ହେଲେ ଆପଣଙ୍କର ?"

ସହାସ୍ୟ ବଦନରେ ଫର୍‌ଫ୍ରେ ଉତ୍ତର ଦେଲେ, "ମୋର ଯଦି ହୋଇଥାନ୍ତା ତେବେ ମୁଁ ନିଜକୁ ଭାଗ୍ୟବାନ୍ ମନେକରନ୍ତି । ଭାରି ଭଲ ଜିନିଷଟିଏ ।"

କିଛି ସମୟ ଧରି ଦୁହିଁଙ୍କ ମଧ୍ୟରେ ମଧୁର ଆଳାପ ଚାଲିଲା । ଏଲିଜାବେଥ୍ ବିସ୍ମିତ ହୋଇଗଲା ଯେ ତା' ଉପସ୍ଥିତିଟା ସେମାନଙ୍କର ରୁଚିକର ହେଉନାହିଁ;

ସେ ଯେପରି ସେ ଦୁହିଁଙ୍କ ମଧ୍ୟରେ ଗୋଟାଏ ପ୍ରତିବନ୍ଧକ ହୋଇ ଠିଆହୋଇଛି । ଲୁସେଟା ଉଚ୍ଛୁଳା ନଈ ପରି ଚଳଚଞ୍ଚଳ ହୋଇଉଠୁଛନ୍ତି ଏବଂ ଫର୍‌ଫ୍ରେ ତାଙ୍କର ସେ ହାସ୍ୟ ଲାସ୍ୟମୟୀ ରୂପସମ୍ଭାର ଉପରୁ ଆଖି ଫେରାଇ ନେଇପାରୁନାହାନ୍ତି । ତା' ସହିତ ଫର୍‌ଫ୍ରେ ପଦଟାଏ ବି କଥା ହେଉନାହାନ୍ତି । ତା' ଛାତି ଭିତରଟା କରତି ହୋଇଗଲା । ଯାହାହେଉ ଏ ଅନ୍ତର୍ବେଦନାରୁ ଶୀଘ୍ର ଅବ୍ୟାହତି ମିଳିଗଲା । କାରଣ ମଧୁର ଆଳାପରେ ମଜ୍ଜିରହିଥିବା ଲୁସେଟା କହିଲେ, ''ହଉ, ଆମପାଇଁ ଆପଣଙ୍କର ଯନ୍ତ୍ରଦେଖା କାମଟା ମାରା କରିଦିଅନ୍ତୁ ନାହିଁ'' ଏବଂ ତା' ପରେ ଏଲିଜାବେଥ୍ ସହିତ ସେ ଘରକୁ ଫେରିଆସିଲେ । ଫେରିବାବେଳେ କଥାଛଳରେ ସେ ଏଲିଜାବେଥ୍‌କୁ ଜଣାଇଦେଲେ, ''ସେଦିନ ଜଣେ ବନ୍ଧୁ ମୋ ସହିତ ଫର୍‌ଫ୍ରେଙ୍କର ପରିଚୟ କରାଇଦେଇଥିଲେ; ତେଣୁ ମୁଁ ତାଙ୍କୁ ଦେଖୁ ଦେଖୁ ଚିହ୍ନିପକାଇଲି ।''

କିନ୍ତୁ ସେହି ଦିନଠାରୁ ଏଲିଜାବେଥ୍ ଲୁସେଟାଙ୍କୁ ଲକ୍ଷ୍ୟ କରିବାକୁ ଲାଗିଲା । ଏଥର ଲୁସେଟା ବାହାରକୁ ବୁଲିଯିବାକୁ ବାହାରିବାମାତ୍ରେ ତାଙ୍କର କନକନ ଭାବ, ଛନଛନ ଚାହାଣି ଦେଖି ସେ ଭାବେ, ଏ ନିଶ୍ଚୟ ଫର୍‌ଫ୍ରେଙ୍କୁ ଭେଟିବାଲାଗି ଯାଉଛନ୍ତି ଏବଂ ସେ ଯେତେବେଳେ ଫେରନ୍ତି, ସେତେବେଳେ ତାଙ୍କର ଉଜ୍ଜ୍ୱଳ ନୟନ, ରଙ୍ଗିନ୍ ଅଧର ଓ ରକ୍ତିମ କପୋଳ ଦେଖିଦେଲେ ସେମାନଙ୍କର ସବୁ ଅକୁହା କାହାଣୀ ତା' ଆଗରେ ସ୍ପଷ୍ଟ ହୋଇଯାଏ । ଦିନେ ରାତିରେ ଲୁସେଟା ଘରକୁ ଫେରୁ ଫେରୁ ଏଲିଜାବେଥ୍ କହିଦେଲା, ''ଆଜି ଆପଣ ଫର୍‌ଫ୍ରେଙ୍କ ସହିତ ସାକ୍ଷାତ୍ କରି ଆସିଛନ୍ତି !''

ଉଷୁମ ଖାଇବା ଲାଗି ନିଆଁ ପାଖରେ ବସି ପଡୁ ପଡୁ ଲୁସେଟା କହିଲେ, ''ହଁ ।'' ତା'ପରେ ଏକ ଗଭୀର ଆବେଗରେ ସହଚରୀର ହାତ ଧରିପକାଇ ସେ ପଚାରିଉଠିଲେ, ''ତୁମେ କିପରି ଜାଣିଲ ଏଲିଜାବେଥ୍ ?'' କିନ୍ତୁ କିପରି କେଉଁଠି ଯେ ଫରଫ୍ରେଙ୍କ ସହିତ ତାଙ୍କର ସାକ୍ଷାତ୍ ହେଲା, ସେ ଯେ କ'ଣ ସବୁ କହିଲେ, ସେସବୁ ବିଷୟ ଆଉ ପ୍ରକାଶ କଲେନାହିଁ ।

ଏଥର ଦେଖାଗଲା, ଫର୍‌ଫ୍ରେ କ୍ରମଶଃ ଚାହା ଖାଇବାଲାଗି ଲୁସେଟାଙ୍କ ଘରକୁ ଆସୁଛନ୍ତି । ଏଲିଜାବେଥ୍‌କୁ ଦେଖିଦେଲେ ମିଛ କହନ୍ତି; କହନ୍ତି, ସେ ଉଭୟଙ୍କୁ ଦେଖିବାକୁ ଆସିଛନ୍ତି । କିନ୍ତୁ ବ୍ୟବହାରରୁ ଜଣାପଡ଼େ, ଏଲିଜାବେଥ୍ ସେଠାରେ ନଥିଲେ ସେ ବରଂ ଖୁସିହୁଅନ୍ତେ । ବେଳେ ବେଳେ ତାଙ୍କୁ ଦେଖି

ନଦେଖିବା ପରି ବ୍ୟବହାର କରନ୍ତି । ଏଲିଜାବେଥ୍ ବି ବିଶେଷ କିଛି କହେନାହିଁ । କେତେବେଳେ କିମିତି ଗୋଟାଏ ଅଧେ ପ୍ରଶ୍ନ ପଚାରିଦିଏ; କିନ୍ତୁ ଫର୍‌ଫ୍ରେ ଗୋଟାଏ ଶୁଖିଲା 'ହଁ' କିମ୍ବା 'ନାହିଁ'ରେ ସବୁ ପ୍ରଶ୍ନ ଏଡ଼ାଇଦିଅନ୍ତି । ଦିନ ଥିଲା, ଟିକିଏ ତା' ହାତ ଧରି ଚାଲିବାକୁ, ସୁବିଧା ପାଇଲେ ଦୁଇପଦ କଥା ହୋଇଯିବାକୁ ଏହି ଫର୍‌ଫ୍ରେ ଚାତକ ପରି ଚାହିଁରହୁଥିଲେ; ନାଚବେଳେ ତା' ସହିତ ନାଚିବାର ସୁଯୋଗ ମିଳିଗଲେ ଏହି ଲୋକ ତନ୍ମୟ ହୋଇ ପ୍ରେମ ଓ ବନ୍ଧୁତ୍ୱକୁ ସମତୁଳ କରି ନାଚୁଥିଲେ । ସେହି ଫରଫ୍ରେ ଆଜି ବଦଳିଗଲେଣି । କିନ୍ତୁ ଏଲିଜାବେଥ୍ ସୁସାନ୍ ହେଞ୍ଚାର୍ଡ଼ଙ୍କ ଝିଅ । ଦୁଃଖକଷ୍ଟ ସହି ସହି ସେ ଛାତି ପଥର କରିସାରିଛି । ଏସବୁ ହତାଦରକୁ ବି ସେ ସହିଯିବାକୁ ଲାଗିଲା । ଫର୍‌ଫ୍ରେ ଆସିଲେ ସେ କାମର ବାହାନା କରି ଲୁସେଟାଙ୍କ ପାଖରୁ ଦୂରକୁ ଚାଲିଯିବାରେ ଦେଖାଗଲା ।

ତେଣେ ଲୁସେଟାଙ୍କର ଅଖଣ୍ଡ ନୀରବତା ହେଞ୍ଚାର୍ଡ଼ଙ୍କ ହୃଦୟରେ ପ୍ରେମର ନିଆଁ ଜାଳିଦେଲା । ଦିନେ ସେ ଅସ୍ଥିର ହୋଇ ଲୁସେଟାଙ୍କ ନିକଟକୁ ଚାଲିଆସିଲେ । ଏଲିଜାବେଥ୍ ଜେନ୍ ବାହାରକୁ ଚାଲିଯାଇଥାଏ । ଲୁସେଟା ବସିଥାନ୍ତି ଉପରମହଲାର ବୈଠକଖାନାରେ । ହେଞ୍ଚାର୍ଡ଼ ଦୃଢ଼ତାର ସହିତ ଉପରମହଲାକୁ ଯାଇ ଲୁସେଟାଙ୍କ ପାଖରେ ପହଞ୍ଚିଗଲେ । ଭଦ୍ରତା ଖାତିରରେ କରମର୍ଦ୍ଦନ କରି ଲୁସେଟା ନମ୍ରକଣ୍ଠରେ କହିଲେ, ''ତୁମେ ଆସିଛ ଦେଖି ଖୁସିହେଲି ।''

''କିନ୍ତୁ ମୁଁ ଖାଲିରେ ଆସିନାହିଁ, ଆସିଛି ଗୋଟାଏ ପ୍ରସ୍ତାବ ନେଇ । ମୁଁ ତୁମକୁ ବିବାହ କରିବାକୁ ପ୍ରସ୍ତୁତ । ବିବାହଟା କେବେ ହେଲେ ଭଲ ହେବ, ଏଥର ତୁମେହିଁ ସ୍ଥିରକରି କହ ।''

ଆଖି ଫେରାଇ ନେଇ ଲୁସେଟା କହିଲେ, ''ତୁମ ସ୍ତ୍ରୀଙ୍କର ମୃତ୍ୟୁର ଏତେ ଅଳ୍ପ ଦିନ ମଧ୍ୟରେ ବିବାହ କରିବାଟା ସୁନ୍ଦର ହେବନାହିଁ ।''

''ହଁ, ବୋଧହୁଏ ସେମିତି ଲାଗିବ, ତେବେ ବିବାହଟା କେବେ ହେଲେ ସୁବିଧା ହେବ, ସେକଥା ତ କହିପାରିବ ?'' ହେଞ୍ଚାର୍ଡ଼ ତାଙ୍କର ପୂର୍ବ ପ୍ରଶ୍ନ ଉପରେ ଅଡ଼ିବସିଲେ ସତ; କିନ୍ତୁ ଲୁସେଟା ତାଙ୍କୁ ଆଖି ଟେକି ଚାହିଁଲେ ନାହିଁ । ଶେଷରେ ଲୁସେଟା ଗୋଟାଏ ବିଚିତ୍ର ଉତ୍ତର ଦେଇଦେଲେ, ''ବର୍ତ୍ତମାନ ପାଇଁ ଆମ ସମ୍ପର୍କଟା ଯେପରି ଅଛି ରହୁ । ତୁମେ ମୋତେ ଜଣେ ବନ୍ଧୁ ବୋଲି ଭାବ, ମୁଁ ବି ତୁମ ସହିତ ବନ୍ଧୁ ପରି ଚଳିବି ।''

ହେଞ୍ଚାର୍ଡ଼ କ୍ରୋଧରେ ଲାଲ ହୋଇଗଲେ । ''ପାଣି ଆଜିକାଲି ତା'ହେଲେ ଏଇ ଶିରାରେ ବୋହୁଛି !'' କହିଦେଇ ସେ ଧଡ଼କରି ଚଉକିରୁ ଉଠିଗଲେ ଏବଂ ଚାଲି ଯାଉ ଯାଉ କହିଗଲେ, ''ମୋରି ପାଇଁ ଆସି କାଷ୍ଟରବ୍ରିଜ୍‌ରେ ରହିଲ; ଅଥଚ ଏଠି ଆସି ରହିଯିବା ପରେ ମୋ ପ୍ରସ୍ତାବଟାକୁ ଏପରି ଉପରେ ଉପରେ ଉଡ଼ାଇ ଦେଉଛ ?'' ଲୁସେଟା ଅବାକ୍ ହୋଇ ଚାହିଁରହିଛନ୍ତି, ସେ ଦ୍ୱାର ଖୋଲି ଘରୁ ବାହାରିଗଲେ । ଗଲାବେଳେ ବିଦାୟ ବି ନେଲେନାହିଁ ।

ଦୁଇ ପ୍ରେମିକଙ୍କ ମଝିରେ ଠିଆହୋଇ ଲୁସେଟା ଯେଉଁ ପରିସ୍ଥିତି ସୃଷ୍ଟି କରି ଗଲିଥିଲା ଏଲିଜାବେଥ୍ ଆଖିରେ ତାହା ଛପି ରହିଲାନାହିଁ । ସ୍ପଷ୍ଟ ଦେଖିହେଲା ଯେ ସେ ଦିହେଁ ଲୁସେଟାଙ୍କ ପ୍ରେମରେ ପାଗଳ । ଦିନ ଯେତେ ଗଡ଼ିଯାଉଛି, ଲୁସେଟା ସେ ଉଭୟଙ୍କୁ ସେତେ ଆଶା ଓ ଭରସା ଦେଇ ଖେଳାଇବାରେ ଲାଗିଛନ୍ତି । ସେମାନେ ଲୁସେଟା ଚିନ୍ତାରେ ଏତେ ବିଭୋର ହୋଇପଡ଼ିଛନ୍ତି ଯେ ତା' ବିଷୟରେ କେହି ମୁଣ୍ଡ ବି ଖେଳାଉନାହାନ୍ତି । ହଁ, ଫର୍‌ଫ୍ରେ ଏପରି ବିଭୋର ହେବାରେ ଯଥାର୍ଥତା ରହିଛି; କିନ୍ତୁ ତା' ବାପା ଯେ କାହିଁକି ଏପରି ହେଉଛନ୍ତି, ଏଲିଜାବେଥ୍ ତା'ର କୌଣସି କାରଣ ଖୋଜି ପାଇଲାନାହିଁ । ଯେଉଁ ଲୋକ ତାକୁ ଝିଅ ବୋଲି ଗ୍ରହଣ କରିବାକୁ ଏତେ ଆଗ୍ରହ, ଏତେ ଆନନ୍ଦ ଦେଖାଇଥିଲେ, ସେହି ଲୋକ ତାକୁ ଏପରି ହତାଦର ବା କରୁଛନ୍ତି କାହିଁକି ?

କିନ୍ତୁ ଦିନ ଯେତେ ଗଡ଼ିଚାଲିଲା, ହେଞ୍ଚାର୍ଡ଼ଙ୍କର ଦୁରବସ୍ଥା ଦେଖି ଏଲିଜାବେଥ୍‌ର ହୃଦୟ ସେତେ କାନ୍ଦିଉଠିଲା । କେବଳ ଲୁସେଟାଙ୍କୁ ପାଇବାର ବ୍ୟର୍ଥତା ଯେ ତାଙ୍କୁ କ୍ଷୁଣ୍ଣ କରିଚାଲିଥିଲା, ତା' ନୁହେଁ; ବ୍ୟବସାୟ କ୍ଷେତ୍ରରେ ବି ତାଙ୍କୁ ବହୁ ବ୍ୟର୍ଥତାର ସମ୍ମୁଖୀନ ହେବାକୁ ପଡ଼ିଲା । ହେଞ୍ଚାର୍ଡ଼ ଧୀରେ ଧୀରେ ସନ୍ଦେହ କଲେ ଯେ ଲୁସେଟାଙ୍କର ହତାଦର ପଛରେ ଫର୍‌ଫ୍ରେଙ୍କର ହିଁ ହାତ ରହିଛି, ସେ ହିଁ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ । ଦୁଃଖ ଓ ନୈରାଶ୍ୟର ବଶବର୍ତ୍ତୀ ହୋଇ ସେ ସ୍ଥିରକଲେ; ପ୍ରେମ କ୍ଷେତ୍ରରେ ନପାରିଲେ ବି ବ୍ୟବସାୟ କ୍ଷେତ୍ରରେ ଫର୍‌ଫ୍ରେଙ୍କୁ ତଳିତଳାନ୍ତ କରିଦେବେ । ଗହମର ଖରିଦ ଦାମ୍ ବଢ଼ାଇଦେବା ସଙ୍ଗେ ସଙ୍ଗେ ବିକ୍ରିଦାମ୍ କମାଇଦେଇ ସେ ତାଙ୍କୁ ସର୍ବସ୍ୱାନ୍ତ କରିଦେବେ । ହେଞ୍ଚାର୍ଡ଼ଙ୍କର ଏ ଯୋଜନା ସାଙ୍ଗକୁ ପାଗ ବି ଅନୁକୂଳ ହେବା ପରି ବୋଧହେଲା । ଜୁନ୍ ମାସରେ ଏପରି ବର୍ଷା ହେଲା ଯେ, ସେ ଭାବିଲେ ଏ ବର୍ଷ ଫସଲ ମୋଟେ ଭଲ ହେବନାହିଁ । ତେଣୁ ଯେଉଁଠି ଯେତେ ଗହମ ପାଇଲେ, ସେସବୁ ଚଢ଼ା ଦରରେ

କିଣିପକାଇଲେ । ଗୋଦାମ ଘରଗୁଡ଼ାକ ଗହମରେ ପୂର୍ଣ୍ଣ ହୋଇଗଲା । କିନ୍ତୁ ତାଙ୍କ ଦୁର୍ଯୋଗକୁ ତା' ପରେ ପରେ ପାଗ ବଦଳିଗଲା । ଦିନୁଦିନ ଖରା ବଢ଼ିବାରେ ଲାଗିଲା । ଫସଲ ଯେ ଖୁବ୍ ଭଲ ହେବ, ସେଥିରେ ଆଉ କୌଣସି ସନ୍ଦେହ ରହିଲା ନାହିଁ । ଫଳତଃ, ପୁରୁଣା ଗହମର ଦର ଛାଏଁ ଛାଏଁ କମିଗଲା । ହେଞ୍ଚାର୍ଡ଼ ଚଢ଼ାଦରରେ କିଣିଥିବା ଗହମକୁ ଊଣା ଦରରେ ବିକିଦେବାକୁ ବାଧ ହେଲେ । ସେଥିରେ ଗୁଡ଼ାଏ ଟଙ୍କା କ୍ଷତି ହୋଇଗଲା । କିନ୍ତୁ ଫର୍‌ଫ୍ରେଙ୍କ ବ୍ୟବସାୟ ନିଖୁଣଭାବରେ ଚାଲିଥାଏ । ସେ ଜାଣିଥିଲେ 'ଚାଷ ତରତର ବଣିଜ ମଠ'; ଖର୍ଦ୍ଦି ବିକ୍ରିରେ ସେ ଭାରି ହୁସିଆର । ଅବସ୍ଥା ଦେଖି ହେଞ୍ଚାର୍ଡ଼ ଦୁଃଖରେ ଭାଙ୍ଗିପଡ଼ିଲେ; ଭାବିଲେ ଏଥର ସେ ହିଁ ମେୟର ହୋଇଯିବ ।

ଶେଷରେ ଦିନେ ଲୁସେଟାଙ୍କୁ ପାଇବାଲାଗି ଗୋଟାଏ ଶେଷ ଚେଷ୍ଟା କରିବା ଉଦ୍ଦେଶ୍ୟରେ ହେଞ୍ଚାର୍ଡ଼ ବାହାରିପଡ଼ିଲେ । କିନ୍ତୁ ହାଇପ୍ଲେସ୍ ହଲ୍‌ରେ ପହଞ୍ଚି ଭିତରକୁ ଖବର ଦେଇ ଉତ୍ତର ପାଇଲେ ଯେ କୁମାରୀ ଟେମ୍ପଲ୍‌ମ୍ୟାନ୍ ବୁଲି ବାହାରିଛନ୍ତି; ତେଣୁ ସାକ୍ଷାତ୍ ହୋଇପାରିବନାହିଁ । ଆହତ ହୃଦୟ ନେଇ ସେଠାରୁ ଫେରିଆସି ହେଞ୍ଚାର୍ଡ଼ ଯାଇ ଠିକ୍ ତା'ର ସାମନା ଘର ପାଖରେ ଠିଆହୋଇଗଲେ । ଜହ୍ନ ଆଲୁଅ ଆହୁରି ଭଲଭାବରେ ପଡ଼ିନଥାଏ; ରାସ୍ତାର ବତିଗୁଡ଼ାକ ବି ଲାଗିନଥାଏ । ଝାପ୍‌ସା ଅନ୍ଧାରରେ ଛପି ରହି ସେ ହାଇପ୍ଲେସ୍ ହଲ୍‌କୁ ଚାହିଁଲେ । ଦେଖିଲେ ଉପରମହଲାର ଶୋଇବା ଘରେ ଆଲୁଅ ଜଳୁଛି । ଲୁସେଟା ବୋଧହୁଏ ବୁଲିଯିବା ଲାଗି ବେଶ ହେଉଥିଲେ । ଘଣ୍ଟାରେ ନଅଟା ବାଜିଲା । ଉପରମହଲାର ଆଲୁଅ ଲିଭିଗଲା ଏବଂ ଅଳ୍ପ କ୍ଷଣ ମଧ୍ୟରେ ଦେଖାଗଲା ସାହିମୁଣ୍ଡରୁ ଫର୍‌ଫ୍ରେ ଚାଲିଚାଲି ଆସୁଛନ୍ତି । ସେ ଆସି ଲୁସେଟାଙ୍କ କବାଟରେ ହାତମାରି ଡାକିଲେ । ସଙ୍ଗେ ସଙ୍ଗେ କବାଟ ଖୋଲିଗଲା ଏବଂ ଲୁସେଟା ବାହାରିଆସି ଫର୍‌ଫ୍ରେଙ୍କର ହାତ ଧରିପକାଇଲେ; ଦିହେଁ ହାତ ଧରାଧରି ହୋଇ ଗଳି ଭିତରେ କେଉଁଆଡ଼େ ଚାଲିଗଲେ ।

ଈର୍ଷାରେ ଜଳିପୋଡ଼ିଗଲେ ବି ଗର୍ବୀ ଆତ୍ମାଭିମାନୀ ହେଞ୍ଚାର୍ଡ଼ ସେମାନଙ୍କର ଅନୁସରଣ ନକରି ଲୁସେଟା ଫେରିବା ପର୍ଯ୍ୟନ୍ତ ସେହିଠାରେ ଅପେକ୍ଷା କରି ରହିଲେ । ଘଣ୍ଟାଏ ଖଣ୍ଡେ ବିତିଯିବା ପରେ ଦେଖାଗଲା ଯେ ଲୁସେଟା ଏକା ଏକା ଫେରୁଛନ୍ତି । ସେତେବେଳକୁ ରାସ୍ତାର ବତିଗୁଡ଼ାକ ଲାଗିଯାଇଥାଏ । ହେଞ୍ଚାର୍ଡ଼ ଦେଖିଲେ ଲୁସେଟାଙ୍କ ମୁହଁଟା ଆନନ୍ଦ ଉଲ୍ଲାସରେ ଝଲସି ଉଠୁଛି । ସେ ଆସି

ନିଜ ଘର ଫାଟକ ପାଖରେ ପହଞ୍ଚିଯିବା ମାତ୍ରେ ହେଞ୍ଚାର୍ଡ଼ ସେଠାକୁ ମାଡ଼ିଗଲେ । ତାଙ୍କୁ ଦେଖିବାମାତ୍ରେ ଲୁସେଟା ଚମକିଉଠି କହିପକାଇଲେ, ''ତୁମେ ଆସି ମତେ ଏପରି ଡରେଇ ଦେଉଛ ନା ! ରାତି ଆସି ଦଶଟା ହେଲାଣି, କେଉଁ ଅଧିକାରରେ ଏପରି ଛପି ଛପି ଆସି ଡରାଇଦେଉଛ ?''

ହେଞ୍ଚାର୍ଡ ରୁକ୍ଷ ଭାବରେ କହିଦେଲେ, ''ମୁଁ ଠିକ୍ ଘଣ୍ଟାଏ ତଳେ ଆସିଥିଲି । କହିଦେଲ ସାକ୍ଷାତ୍ କରିପାରିବ ନାହିଁ । ଦେଖୁଛି ତୁମେ ଗୋଟାଏ ବିଷୟ ଭୁଲିଯାଉଛ, ତୁମକୁ ସେଇଟା ମନେପକାଇଦେବା ଦରକାର ପଡୁଛି ।''

ଲୁସେଟା ବାଧହୋଇ ତାଙ୍କୁ ଘର ଭିତରକୁ ଡାକି ନେଇଗଲେ; ତାଙ୍କୁ ବସିବାଲାଗି ଆସନ ଦେଖାଇଦେଇ ଅସହାୟ ଅବସ୍ଥାରେ ନିଜେ ଗୋଟାଏ ଚଉକିରେ ଲୋଟିପଡ଼ିଲେ । ଆଖିରେ ତାଙ୍କର ଫୁଟିଉଠିଲା ଜିଜ୍ଞାସା । ହେଞ୍ଚାର୍ଡ଼ ଚଉକିରେ ନବସି ଲୁସେଟାଙ୍କର ଖୁବ୍ ନିକଟରେ ଠିଆହୋଇ ସେମାନଙ୍କ ମଧ୍ୟରେ ଜେରେସୀରେ ଯେଉଁ ମଧୁର ସମ୍ପର୍କ ଗଢ଼ିଉଠିଥିଲା, ତାହା ସ୍ମରଣ କରାଇବାକୁ ଲାଗିଲେ । ହଜିଲା ଦିନର ସୁଖ-ସ୍ମୃତିରେ ତନ୍ମୟ ହୋଇ ସେ ଶେଷରେ କହିଲେ, ''ତେଣୁ ମୁଁ ଭାବେ, ତୁମ ଉପରେ ମୋର ଗୋଟାଏ ଅଧିକାର ରହିଛି ।''

ଲୁସେଟାଙ୍କ ମୁହଁରୁ ଗୋଟାଏ ଶୁଷ୍କ ନିରସ ମନ୍ତବ୍ୟ ବାହାରିପଡ଼ିଲା, ''ଆଜି ସେ ସବୁ ମୂଲ୍ୟହୀନ ହୋଇପଡ଼ିଛି । ତୁମେ ଯଦି ପ୍ରକୃତରେ ମୋତେ ପ୍ରେମ କରୁଥାନ୍ତ, ତେବେ ମୁଁ ମନେକରନ୍ତି ଯେ ତୁମକୁ ବିବାହ କରିବା ଉଚିତ ହେବ; କିନ୍ତୁ ମୁଁ ଦେଖୁଛି ତୁମେ କେବଳ ଗୋଟାଏ କର୍ତ୍ତବ୍ୟ ପାଳନ କରିବା ଲାଗି ମୋତେ ବିବାହ କରିବାକୁ କହୁଛ । ମୁଁ ତୁମର ଯେଉଁ ସେବା-ଶୁଶ୍ରୁଷା କରିଛି, ତୁମଲାଗି ଅତୀତରେ ମୋର ଚରିତ୍ରରେ ଯେଉଁ କଳଙ୍କ ଲଗାଇଦେଇଥିଲି, ସେସବୁ ପରିଶୋଧ କରିବା ଉଦ୍ଦେଶ୍ୟରେହିଁ ତୁମେ ଏ ବିବାହ ପ୍ରସ୍ତାବ ଦେଉଛ ।''

''ତା' ହେଲେ ମତେ ଦେଖିବାଲାଗି ତୁମେ ଏଠିକି କାହିଁକି ଚାଲିଆସିଲ ?''

''ଭାବିଲି ଆମ ଦୁଇଜଣଙ୍କ ଭିତରେ ଯେତେବେଳେ ଏତେଗୁଡ଼ାଏ ଘଟଣା ଘଟିଯାଇଛି, ମୁଁ ପସନ୍ଦ କରେ ବା ନକରେ ତୁମକୁ ବିବାହ କରିବା ହିଁ ମୋର ଉଚିତ ହେବ ।''

''ତା'ହେଲେ ସେ ସିଦ୍ଧାନ୍ତଟା ବର୍ତ୍ତମାନ ବଦଳିଗଲା କାହିଁକି ?''

ଲୁସେଟା କୌଣସି ଉତ୍ତର ନଦେଇ ଚୁପ୍‌ହୋଇ ବସିରହିଲେ । ହେଞ୍ଚାର୍ଡ଼ କହିଚାଲିଲେ, ''ଅବଶ୍ୟ ମୁଁ କାରଣଟା ଜାଣେ; କିନ୍ତୁ ତୁମେ ଯେଉଁ ଲୋକକୁ ପସନ୍ଦ କରିନେଇଛ, ସେ ମୋଠାରୁ କୌଣସି ଗୁଣରେ ଭଲନୁହେଁ ।''

ଉତ୍ତ୍ୟକ୍ତ ହୋଇ ଲୁସେଟା କହିପକାଇଲେ, ''ତୁମେ ଯଦି ସେ ଯେତିକି ଭଲ ଅନ୍ତତଃ ସେତିକି ଭଲ ହୋଇଥାଅ, ତେବେ ଏହି ମୁହୂର୍ତ୍ତରେ ଏଠାରୁ ଚାଲିଯାଅ । ଯଦି ପ୍ରକୃତରେ ପୁରୁଷ ହୋଇଥିବ, ତେବେ ଏପରି ଅଡ଼ିବସନାହିଁ ।''

ହେଞ୍ଚାର୍ଡ଼ଙ୍କର କ୍ରୋଧାଗ୍ନି ପ୍ରଜ୍ଜ୍ୱଳିତ ହୋଇଉଠିଲା । ସେ ରୋକ୍ ଠୋକ୍ ଭାବରେ ଜଣାଇଦେଲେ, ''ତୁମର ଯଦି ସମ୍ମାନଜନକ ବୋଲି କିଛିଟା ଥାଏ, ତେବେ ମୋ ବିବାହ ପ୍ରସ୍ତାବ ଏଡ଼ିଦେଇପାରିବନାହିଁ । ସାବଧାନ କରିଦେଉଛି, ଶୁଣିରଖ– ଯଦି ଆଜି ଏହି ରାତି ଭିତରେ ରୀତିମତ ଜଣେ କାହାକୁ ସାକ୍ଷୀ ରଖି ମୋତେ ବିବାହ କରି ମୋର ସ୍ତ୍ରୀ ହୋଇ ରହିବ ବୋଲି ଶପଥ ନ କରିଛ, ତେବେ ତୁମର ସମସ୍ତ ଅତୀତ କାହାଣୀ ଲୋକଙ୍କ ଆଗରେ ଖୋଲି କହିଦେବି ।''

ଲୁସେଟା ଆତଙ୍କରେ ଥରିଉଠିଲେ । ଭୟଭୀତ ହୋଇ ସେ ବିବାହ ପ୍ରସ୍ତାବରେ ରାଜି ହୋଇଗଲେ । ଦୁଃଖ ଓ ନୈରାଶ୍ୟରେ ମୁହଁ ତାଙ୍କର ବିବର୍ଣ୍ଣ ହୋଇଗଲା; କିନ୍ତୁ ହେଞ୍ଚାର୍ଡ଼ଙ୍କ ଆଖିରେ ଟିକିଏ ବି କରୁଣା ଦେଖାଗଲାନାହିଁ । ବୋଧହୁଏ ଲୁସେଟା ଯଦି ଫର୍‌ଫ୍ରେଙ୍କ ଭିନ୍ନ ଅନ୍ୟ କାହାକୁ ହୃଦୟ ସମର୍ପିଦେଇଥାଆନ୍ତେ, ତେବେ ହେଞ୍ଚାର୍ଡ଼ଙ୍କ ହୃଦୟରେ କରୁଣାର ସଞ୍ଚାର ହୋଇପାରିଥାନ୍ତା । କିନ୍ତୁ ଯେ ତାଙ୍କ ଶତ୍ରୁକୁ ପ୍ରେମ କରେ, ସେ ତାକୁ କଦାପି କ୍ଷମା ଦେଇପାରିବେନାହିଁ ।

ଆଉ ବାକ୍ୟବ୍ୟୟ ନକରି ଲୁସେଟା ଏଲିଜାବେଥ୍ ଜେନ୍‌କୁ ଡକାଇ ପଠାଇଲେ । ଏତେ ରାତିରେ ତା' ପାଖରେ କି କାମ ଥାଇପାରେ, ତାହା ବୁଝି ନପାରି ସେ ବିସ୍ମିତ ହୋଇ ଆସି ପହଞ୍ଚିଯାଏ ତ, ଦେଖିଲା ତା' ବାପା ସେଠାରେ ଗମ୍ଭୀର ହୋଇ ବସିଛନ୍ତି । ମୁଣ୍ଡ ନୁଆଁଇଦେଇ ସେ ଯାଇ ହେଞ୍ଚାର୍ଡ଼ଙ୍କ ପାଖରେ ଠିଆହେଲା । ତା' ହାତ ଧରି ହେଞ୍ଚାର୍ଡ଼ କହିଲେ, ''ଏଲିଜାବେଥ୍ ଜେନ୍ ! ଆମ ଦୁଇଜଣଙ୍କ ମଧ୍ୟରେ ଗୋଟାଏ ସିଦ୍ଧାନ୍ତ ହେବାକୁ ଯାଉଛି, ତୁ ଟିକିଏ ସାକ୍ଷୀ ହୋଇ ଠିଆହୁଅ, ସେତକ ଶୁଣିବୁ ।'' ତା'ପରେ ସେ ଲୁସେଟାଙ୍କୁ ପଚାରିଲେ, ''କ'ଣ ଲୁସେଟା, ତୁମେ ମୋତେ ବିବାହ କରିବାକୁ ରାଜିଅଛ ?''

''ଯଦି ତୁମେ ଚାହୁଁଛ, ତେବେ ମୁଁ ବିବାହ କରିବାକୁ ରାଜି ଅଛି ।'' ଲୁସେଟାଙ୍କ ମୁହଁରୁ ଏତକ ବାହାରି ଆସିବାମାତ୍ରେ ସେ ମୂର୍ଚ୍ଛିତ ହୋଇ ଚଉକି ଉପରେ ଟଳିପଡ଼ିଲେ । ନଇଁପଡ଼ି ତାଙ୍କ ଦେହ ମୁଣ୍ଡ ଆଉଁସି ଦେଉ ଦେଉ ଏଲିଜାବେଥ୍ କହିଲା, ''ବୋଧହୁଏ କିଛି ଗୋଟାଏ ବାଧବାଧକତାରେ ପଡ଼ି

ସେ ଏପରି ହଁ ଭରୁଛନ୍ତି, ନହେଲେ ଏତେ ଯନ୍ତ୍ରଣା କାହିଁକି ଅନୁଭବ କରନ୍ତେ ? ... ତାଙ୍କ ଇଚ୍ଛା ବିରୁଦ୍ଧରେ କିଛି କରିବାଲାଗି ତାଙ୍କୁ ବାଧ କରନ୍ତୁ ନାହିଁ ବାପା !''

ହେଞ୍ଚାର୍ଡ଼ ଦୃଢ଼କଣ୍ଠରେ ଶୁଣାଇଦେଲେ, ''ଆଃ, ମୁଁ ଚାହୁଁଥିଲି ତୁ କେବଳ ସାକ୍ଷୀ ହୋଇ ଏତକ ଶୁଣ ଯେ ସେ ମୋତେ ବିବାହ କରିବାକୁ ରାଜିଅଛନ୍ତି । ସେତକ ଶୁଣିସାରିଲୁ, ତୁ ବର୍ତ୍ତମାନ ଯାଇପାରୁ ।''

ଏଲିଜାବେଥ୍ କିନ୍ତୁ ଲୁସେଟାଙ୍କ ପାଖରେ ବସିରହିଲା । କିଛି ସମୟ ପରେ ହେଞ୍ଚାର୍ଡ଼ ଯେତେବେଳେ ସେଠାରୁ ଚାଲିଗଲେ, ସେତେବେଳେ ସେ ଲୁସେଟାଙ୍କୁ ପଚାରିଲା, ''ଏସବୁ କ'ଣ, ଆପଣ କିପରି ଅତି ପରିଚିତଙ୍କ ପରି ବାପାଙ୍କୁ ନାଆଁ ଧରି ଡାକିଲେ ? ଆପଣ କ'ଣ ତାଙ୍କୁ ପୂର୍ବରୁ ଚିହ୍ନିଥିଲେ ? ତାଙ୍କର ବା ଆପଣଙ୍କ ଉପରେ ଏ କି ଅଦ୍ଭୁତ ପ୍ରଭାବ ଯେ, ନିଜ ଇଚ୍ଛା ବିରୁଦ୍ଧରେ ବି ଆପଣ ତାଙ୍କୁ ବିବାହ କରିବାକୁ ରାଜି ହୋଇଗଲେ ? ନା, ନା; ଏସବୁ ହୋଇପାରେନା ! ମୁଁ ଯିବି, ବାପାଙ୍କୁ ଅନୁରୋଧ କରିବି, ସେ ଆପଣଙ୍କୁ ଏ ବିବାହରୁ ଅବ୍ୟାହତି ଦିଅନ୍ତୁ ।''

ଲୁସେଟା ବାଧାଦେଇ କହିଲେ, ''ନା ଏଲିଜାବେଥ୍, ତାଙ୍କୁ ଯାଇ ଚିଡ଼ାଅନି; ଏ ପରିସ୍ଥିତିରେ ଆଉ କିଛି କରାଯାଇନପାରେ ।'' କହୁ କହୁ ତାଙ୍କ ଆଖିରୁ ବୋହିପଡ଼ିଲା ଅନ୍ତର୍ବେଦନାର ଧାର ଧାର ଲୁହ ।

## ଦଶ

ତା' ପରଦିନ ସକାଳ କଥା । ହେଞ୍ଚାର୍ଡ଼ ଆଉ ସହରର ମେୟର ନଥିଲେ ବି ସେପର୍ଯ୍ୟନ୍ତ ସେ ଜଣେ ମୁଖ୍ୟ ଅବୈତନିକ ମାଜିଷ୍ଟ୍ରେଟ୍ ଥାଆନ୍ତି । ମକଦ୍ଦମା ବିଚାର କରିବାଲାଗି ସେ ସକାଳୁ ସକାଳୁ ଟାଉନ୍ ହଲ୍ କଚେରିକୁ ଚାଲିଆସିଲେ । ଦ୍ୱିତୀୟ ମାଜିଷ୍ଟ୍ରେଟ୍ ବି ଆସିଯାଇଥାନ୍ତି । ସେଦିନ ଗୋଟିଏ ମାତ୍ର ମକଦ୍ଦମା ବିଚାର ହେବାର ଥାଏ । ଦୋଷୀକୁ ଆଣି ବିଚାରପତିଙ୍କ ଆଗରେ ଠିଆକରାଗଲା । ଦୋଷୀଟି ଜଣେ ବୁଢ଼ୀ, ଦେହର ଚମଡ଼ା ଲୋଳିପଡ଼ିଲାଣି, ତା ଅସ୍ଥିକଙ୍କାଳସାର ଦେହଟାକୁ ଦୁଇଖଣ୍ଡ ଚିରାଲୁଗା ଯାହା ଘୋଡ଼ାଇଥାଏ ।

ବୁଢ଼ୀ ଆସି ପହଞ୍ଚୁ ପହଞ୍ଚୁ ବିଚାରପତି ଦୁଇଜଣଙ୍କ ମୁହଁକୁ ବଲ୍‌ବଲ୍ ଚାହିଁବାକୁ ଲାଗିଲା । ତାଙ୍କୁ ଦେଖି ହେଞ୍ଚାର୍ଡ଼ଙ୍କର ମନେହେଲା ତାକୁ ସେ ନିଶ୍ଚୟ କେଉଁଠି

ଦେଖିଛନ୍ତି । ବୁଢ଼ୀର ଦୋଷ ହେଲା, ଗତ ରାତିରେ ସେ ଗୁଡ଼ାଏ ମଦ ପିଇ ବିର୍ ବଜାରରେ ଅଭଦ୍ରଙ୍କ ପରି ପାଟିତୁଣ୍ଡ କରୁଥିଲା । ତାକୁ ଗିରଫ କରିବାଲାଗି ଯେଉଁ ପୁଲିସ ଗଲେ, ସେମାନଙ୍କୁ ସେ ଗାଳିଗୁଲଜ କରିଗଲା । ମକଦ୍ଦମାର ସାକ୍ଷ୍ୟ ନିଆଯିବା ପରେ ହେଞ୍ଚାର୍ଡ଼ ବୁଢ଼ୀକୁ ପଚାରିଲେ, ''ଆଛା, ତୋର କିଛି କହିବାର ଅଛି ?''

ବୁଢ଼ୀ ମୁହଁଟା ଉଜ୍ଜ୍ୱଳ ହୋଇଗଲା । ସେ କହିଲା, ''ହଁ ଅବଧାନ, କୋଡ଼ିଏ ବର୍ଷ ତଳର କଥା । ମୁଁ ସେତେବେଳେ ୱେଡ଼େନ୍ ଫେୟାର ମେଳାରେ ସିମେଇ ଖିରି ବିକୁଥାଏ... ।''

ଏ ଗୌରଚନ୍ଦ୍ରିକା ଶୁଣୁ ଶୁଣୁ ହେଞ୍ଚାର୍ଡ଼ଙ୍କର ଆଖି ତରାଟି ହୋଇଗଲା । ବୁଢ଼ୀ ତା'ର କହିଚାଲିଲା—ଜଣେ ଲୋକ ତା ସ୍ତ୍ରୀ ଓ ଛୋଟ ଝିଅଟିଏ ନେଇ ମୋ ଦୋକାନ ଭିତରକୁ ଆସି କିଛି ସିମେଇ ଖିରି କିଣି ଖାଇଲା । ମିଛ କାହିଁକି କହିବି; ଯେଉଁମାନେ ଚାହୁଁଥିଲେ ମୁଁ ସେମାନଙ୍କ ଖିରିରେ ଟିକିଏ ମଦ ବି ମିଶାଇ ଦେଉଥିଲି । ସେ ଲୋକ ବି କିଛି ମଦ ମାଗିଲା । ମଦ ଖାଇ ଖାଇ ଲୋକଟା ଏପରି ନିଶାରେ ଭୋଳ ହୋଇଗଲା ଯେ, ସେ ନିଜ ସ୍ତ୍ରୀ ସହିତ କଳି କରିବାକୁ ବସିଲା । ନିଶାରେ ମାତାଲ ହୋଇ ସେ ନିଜ ସ୍ତ୍ରୀଟାକୁ ବିକିଦେବା ଲାଗି ନିଲାମ ଡାକିଲା । ଜଣେ ନାଉରି ପାଞ୍ଚଖଣ୍ଡି କୋଡ଼ିଏ ଟଙ୍କିଆ ନୋଟ୍ ଦେଇ ମାଇପିଟାକୁ କିଣିନେଲା । ସେହି ଯେଉଁ ଲୋକ ମାତାଲ ହୋଇ ନିଜ ସ୍ତ୍ରୀଟାକୁ ବିକିଦେଇଥିଲା, ସେ ଲୋକ ଆଜି ଏଠି ଉଚ୍ଚ ଆସନ ପାଇ ବସିପାରିଲା । ଆଉ ମୁଁ ଟିକିଏ ମଦ ଖାଇଦେଲି ବୋଲି ମୁଁ କି ଦୋଷ କରିପକାଇଲି ? ମୁଁ ହେବି ଦୋଷୀ, ସେ ହେବେ ବିଚାରପତି ?

ଲୋକେ ଦେଖିଲେ ହେଞ୍ଚାର୍ଡ଼ଙ୍କର ମୁହଁଟା କଳାକାଠ ପଡ଼ିଗଲା । ଦ୍ୱିତୀୟ ବିଚାରପତି ଅବସ୍ଥା ସମ୍ଭାଳିବାକୁ ଯାଇ ବୁଢ଼ୀକୁ କହିଲେ, ''ଆଲୋ, ତୋର ଏ ଗପ ଶୁଣିବାକୁ ଆମେ ଏଠି ବସିନାହୁଁ । ଏହି ଯେଉଁ ଘଟଣାରେ ତତେ ଗିରଫ କରାଯାଇଛି, ଏ ବିଷୟରେ ତୋର ଆତ୍ମପକ୍ଷ ସମର୍ଥନ କରି କିଛି କହିବାର ଅଛି କି ?''

ବୁଢ଼ୀ ହସି ହସି କହିଲା, ''ଅବଧାନେ, ଇଏ କ'ଣ ମୋ ଆତ୍ମପକ୍ଷ ସମର୍ଥନ୍ ହେଲାନାହିଁ ? ଏଥିରୁ କ'ଣ ପ୍ରମାଣ ହେଲାନାହିଁ ଯେ ବିଚାରପତି ବି ମୋଠାରୁ ଭଲନୁହନ୍ତି ? ସେ ଆଉ ମୋର କି ବିଚାର କରିବେ ?''

ଦ୍ୱିତୀୟ ବିଚାରପତି ତାଙ୍କୁ ଭର୍ତ୍ସନା କରି କହିଲେ, ''ଚୁପ୍‌କର, ବାଜେ ଗପ ଶୁଣାନା ।'' କିନ୍ତୁ ଦ୍ୱିତୀୟ ବିଚାରପତିଙ୍କ କଥାରେ ପ୍ରତିବାଦ କରି ହେଞ୍ଚାର୍ଡ଼ କହିଲେ, ''ନା, ନା, ବାଜେ ଗପ ନୁହେଁ; କଥାଟା ନିରାଟ ସତ୍ୟ । ଏଥିରୁ ପ୍ରମାଣିତ ହେଉଛି ଯେ ମୁଁ ସେ ବୁଢ଼ୀଠାରୁ ମହତ୍ତରନୁହେଁ ।'' ତା' ପରେ ପରେ ସେ ଆସନ ଛାଡ଼ିଦେଇ ସେଠାରୁ ଚାଲିଗଲେ । ଘଟଣା ଦେଖି ଦର୍ଶକମାନେ ସ୍ତମ୍ଭୀଭୂତ ହୋଇଗଲେ । ଏ ଦୃଶ୍ୟ ଦେଖିବାଲାଗି ରାସ୍ତାଘାଟର ଲୋକେ ଆସି ଟାଉନ୍‌ହଲ୍‌ରେ ରୁଣ୍ଡ ହୋଇଗଲେ ।

ସେଦିନ ସକାଳେ ନିଦ ଭାଙ୍ଗିବା ବେଳକୁ ଲୁସେଟାଙ୍କର ଟିକିଏ ଡେରି ହୋଇଯାଇଥାଏ । ଶେଯରୁ ଉଠୁ ଉଠୁ ଟାଉନ୍‌ହଲ୍ ପାଖରେ ଏ ଜନଗହଳି ଦେଖି ସେ ଚାକରକୁ ପଚାରିଲେ, ''କିରେ, ଆଜି ସେଠାରେ ଏତେ ଲୋକ ଭିଡ଼ କାହିଁକି ହୋଇଛନ୍ତି ?''

ଚାକରଟି ହେଞ୍ଚାର୍ଡ଼ଙ୍କ ସମ୍ପର୍କରେ ପ୍ରକାଶିତ ଘଟଣାବଳୀ ବର୍ଣ୍ଣନା କରୁ କରୁ କହିଲା, ''ମାଆ, ଗୋଟେ ବୁଢ଼ୀ ପରା କଚେରି ଘରେ ଏ କଥାଗୁଡ଼ା କହି ପ୍ରମାଣ କରିଦେଲା ସେ ହେଞ୍ଚାର୍ଡ଼ ସାହେବ କାଳେ ମେଳା ପଡ଼ିଆରେ ନିଜ ଭାରିଯାଟାକୁ ଟଙ୍କା ପାଞ୍ଚ କୋଡ଼ିରେ ବିକିଦେଇଥିଲେ ।''

ହେଞ୍ଚାର୍ଡ଼ କିପରି ଯେ ନିଜ ଭାର୍ଯ୍ୟାକୁ ହରାଇଥିଲେ ସେ ସମ୍ପର୍କରେ ସେ କୌଣସି ଦିନ ଲୁସେଟାଙ୍କୁ ପ୍ରକୃତ ଘଟଣା ଖୋଲି କହିନଥିଲେ । ବର୍ତ୍ତମାନ ଏସବୁ କଥା ଶୁଣିଦେବା ମାତ୍ରେ ଲୁସେଟା ଚମକିପଡ଼ିଲେ । ଆରେ ! ଏଭଳି ଜଣେ ବଦ୍‌ରାଗୀ ଲୋକକୁ ବିବାହ କରିବାଲାଗି ସେ ଫେରେ ଶପଥ କରିଛନ୍ତି !! ଏ ଲୋକ ପାଖରେ ରହିଲେ ଭବିଷ୍ୟତଟା କି ଘନ ଅନ୍ଧକାରମୟ ହୋଇନଯିବ ସତେ !

ଦିନେ ଖିଆପିଆ ଶେଷ ହେବା ପରେ ଲୁସେଟା ବୁଲିବାକୁ ଚାଲିଗଲେ; ଫେରିଲେ ଯାଇ ସନ୍ଧ୍ୟାକୁ । ଘରକୁ ଆସୁ ଆସୁ ସେ ଏଲିଜାବେଥ୍‌କୁ ଡାକି କହିଲେ, ''ବୁଝିଲି, ତୁମେ ଟିକିଏ ଏଠାରେ ଦେଖାଶୁଣା କରୁଥିବ; ମୁଁ କାଲିଠାରୁ ପୋର୍ଟ ବ୍ରେଡି ଯାଇ ସେଠା ସମୁଦ୍ରକୂଳରେ କିଛିଦିନ କଟାଇ ଫେରିବି ।''

ସେଦିନ ରାତିର ସେହି ଅପ୍ରୀତିକର ଘଟଣାବେଳୁ ଲୁସେଟା ଏପରି ନିଷ୍ପ୍ରଭ ଓ ଦୁର୍ବଳ ଦେଖାଯାଉଥିଲେ ଯେ, ଏଲିଜାବେଥ୍ ମନେକଲା ଜଳବାୟୁ ପରିବର୍ତ୍ତନଲାଗି କିଛିଦିନ ବାହାରକୁ ଚାଲିଗଲେ ବୋଧହୁଏ ତାଙ୍କ ସ୍ୱାସ୍ଥ୍ୟର ଉନ୍ନତି ଘଟିବ । ସେତେବେଳକୁ ଫର୍‌ଫ୍ରେ ବି ଅନ୍ୟତ୍ର ଚାଲିଯାଇଥାନ୍ତି । ଏଲିଜାବେଥ୍ ଭାବିଲା ଲୁସେଟାଙ୍କୁ ଫର୍‌ଫ୍ରେଙ୍କ ଅନୁପସ୍ଥିତିଟା ବି ବେଶି ବାଧୁଥାଇପାରେ ।

ଯାହାହେଉ, ଏଲିଜାବେଥ୍ ହାତରେ ହାଇପ୍ଲେସ୍ ହଲ୍‌ର ଦାୟିତ୍ୱ ସମର୍ପି ଦେଇ ଲୁସେଟା ପୋର୍ଟ ବ୍ରେଡି ଚାଲିଗଲେ । ତିନି ଚାରି ଦିନ ପରେ ହେଞ୍ଚାର୍ଡ଼ ଆସି ଯେତେବେଳେ ଶୁଣିଲେ ଯେ ଲୁସେଟା ଅନ୍ୟତ୍ର ଚାଲିଯାଇଛନ୍ତି, ସେତେବେଳେ ସେ ବିସ୍ମିତ ହୋଇଗଲେ । ତା ବାସିଦିନ ସେ ପୁଣି ଆସି ଲୁସେଟାଙ୍କର ଖବର ପଚାରିଲେ । ଲୁସେଟା ଫେରିଥାନ୍ତି । ଏଲିଜାବେଥ୍ କହିଲା, ''ହଁ, ସେ ଫେରିଲେଣି; କିନ୍ତୁ ବର୍ତ୍ତମାନ ଘରେ ନାହାନ୍ତି; ବୋଧହୁଏ ପୋର୍ଟ ବ୍ରେଡ଼ି ସଡ଼କ ଆଡ଼େ ବୁଲିଯାଇଛନ୍ତି ।'' ହେଞ୍ଚାର୍ଡ଼ ନିରାଶ ହୋଇ ଫେରିଗଲେ । ଦେଖାଗଲା ସେ ଦିନୁଦିନ ଅଧିକରୁ ଅଧିକ ବ୍ୟସ୍ତ ହୋଇପଡୁଛନ୍ତି ।

ଲୁସେଟା ତେଣେ ସତରେ ପୋର୍ଟ ବ୍ରେଡି ସଡ଼କଆଡ଼େ ବୁଲିଯାଇଥାନ୍ତି । ପୋର୍ଟ ବ୍ରେଡି ସଡ଼କଟା ଏକପ୍ରକାର ନିର୍ଜନ ହୋଇ ପଡ଼ିଥାଏ; କାରଣ ସେଦିନ ହାଟପାଳି ହୋଇଥିବାରୁ ସବୁଲୋକ ଆସି କାଷ୍ଟରବ୍ରିଜ୍ ବଜାରରେ ଜମିଥାନ୍ତି ଓ ସେମାନଙ୍କ ମଧ୍ୟରୁ ଅଧିକାଂଶ ଚାଷୀ ଖୋଜୁଥାନ୍ତି ଫର୍‌ଫ୍ରେଙ୍କୁ । ଗତ କିଛି ଦିନ ହେଲା ଫରଫ୍ରେ ସହରରେ ନଥିଲେ । ଆଶା କରାଯାଉଥିଲା, ସେ ସେହିଦିନ ଫେରିବେ, କିନ୍ତୁ ସକାଳ ଯାଇ ଉପରବେଳା ହେବାକୁ ବସିଥାଏ, ତଥାପି ଫର୍‌ଫ୍ରେ ଫେରିନଥାନ୍ତି ।

ଯାହାହେଉ, ପୋର୍ଟ ବ୍ରେଡି ସଡ଼କରେ କିଛିଦୂର ଯିବା ପରେ ରାସ୍ତାକରର ଗୋଟିଏ ପଥର ଉପରେ ବସି ଲୁସେଟା ବିଶ୍ରାମ ନେବାକୁ ଲାଗିଲେ । ସେଠାରୁ ପୋର୍ଟ ବ୍ରେଡି ଆଡ଼କୁ ବହୁଦୂର ପର୍ଯ୍ୟନ୍ତ ସଡ଼କଟା ସିଧା ଚାଲିଯାଇଥାଏ; ଫଳରେ ବହୁଦୂର ପର୍ଯ୍ୟନ୍ତ ଦେଖାଯାଉଥାଏ । ସେହି ଆଡ଼କୁ ଚାହିଁ କିଛି ସମୟ ବସିବା ପରେ ଲୁସେଟା ଗୋଟାଏ ଦୀର୍ଘନିଃଶ୍ୱାସ ମାରି ଉଠିପଡ଼ିଲେ; କିନ୍ତୁ ଠିକ୍ ସେତିକିବେଳେ ଦେଖାଗଲା ତାଙ୍କ ପାଖକୁ ଏଲିଜାବେଥ୍ ଜେନ୍ ଆସୁଛି । ଏପରି ଏକ ନିର୍ଜନ ସ୍ଥାନରେ ମଣିଷ ସାଙ୍ଗସାଥୀ ଜଣକୁ ପାଇଲେ କେତେ ଖୁସିହେବା କଥା; କିନ୍ତୁ ମନେହେଲା ଏଲିଜାବେଥ୍‌ର ଆଗମନଟା ଲୁସେଟାଙ୍କୁ ଭଲଲାଗିଲାନାହିଁ । ଏଲିଜାବେଥ୍ ହସି ହସି ପାଖକୁ ଆସି କହିଲା, ''ଭାବିଲି ଆପଣ ଏକୁଟିଆ ଆସୁଛନ୍ତି, ଯାଏ ଟିକିଏ ସାଙ୍ଗକରି ନେଇଆସେ ।''

ଲୁସେଟା କ'ଣ କହିବାକୁ ଯାଉଥିଲେ, କିନ୍ତୁ ହଠାତ୍ ଗୋଟାଏ ଆକସ୍ମିକ ବିପଦର ସମ୍ମୁଖୀନ ହୋଇ ତାଙ୍କ ପାଟିରୁ କଥା ବାହାରିଲାନାହିଁ । ଦେଖାଗଲା, ବିଲମାନ ଦେଇ ସଡ଼କ ଉପରକୁ ଆସିଥିବା ଗୋଟିଏ ପାଦଚଲା ରାସ୍ତାରେ

ଗୋଟାଏ ବଡ଼ ବଳଦ ଦୌଡ଼ିଆସୁଛି । ବଳଦ ନାକରେ ଗୋଟାଏ ବଳା ପିନ୍ଧାଯାଇଛି ଓ ସେ ବଳାରୁ ଗୋଟାଏ ଲମ୍ବା କାଠ ଝୁଲୁଛି । ବୋଧହୁଏ ଦୁଷ୍ଟ ବଳଦଟାକୁ ସହଜରେ ଆୟତ୍ତ କରିବାଲାଗି କୌଣସି ଚାଷୀ ଏ ଉପାୟ କରିଥିଲା; ତଥାପି ସେ ଦୁଷ୍ଟଟା ଖସିଆସିଛି । ଏହି ଆଗତ ପ୍ରାୟ ବିପଦରୁ ରକ୍ଷା ପାଇବାଲାଗି ଲୁସେଟା ଓ ଏଲିଜାବେଥ୍ ଅଦୂରରେ ଥିବା ଜଣେ ଚାଷୀର ଖମାର ଆଡ଼େ ବ୍ୟସ୍ତହୋଇ ଦୌଡ଼ିଲେ । ହୁରୁଡ଼ା ବଳଦଟି ତାଙ୍କୁ ଗୋଡ଼େଇଲା । ଅବସ୍ଥା କ'ଣ ହୋଇଥାନ୍ତା କହି ହେଉନାହିଁ; କିନ୍ତୁ ଠିକ୍ ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ହେଞ୍ଚାର୍ଡ଼ ଆସି ପହଞ୍ଚିଗଲେ । ଅବସ୍ଥା ଦେଖିଦେବାକ୍ଷଣି ସେ ବଳଦଟା ପଛରେ ଦୌଡ଼ି ତା ନାକରୁ ଝୁଲୁଥିବା କାଠଟାକୁ ଧରିପକାଇଲେ । ସେ ତାକୁ ଟାଣିନେଇ ଖମାର ପଛରେ ବାନ୍ଧିଦେବା ବେଳକୁ ଲୁସେଟା ଓ ଏଲିଜାବେଥ୍ ଘର ପଛରେ ଲୁଚି ଭୟରେ ଥରୁଥାନ୍ତି । ହେଞ୍ଚାର୍ଡ଼ ସେମାନଙ୍କୁ ଆଶ୍ୱାସନା ଦେଇ ଡାକିଆଣିଲେ । କୃତଜ୍ଞତା ପ୍ରକାଶ କରି ଲୁସେଟା କହିଲେ, ''ଅଶେଷ ଧନ୍ୟବାଦ, ତୁମେ ଆମମାନଙ୍କୁ ବଞ୍ଚାଇଦେଲ ।''

କୋମଳ କଣ୍ଠରେ ହେଞ୍ଚାର୍ଡ଼ କହିଲେ, ''ଭୁଲିଯାଅନି ଲୁସେଟା, ତୁମେ ବି ଦିନେ ମୋତେ ମରଣ-ମୁଖରୁ ବଞ୍ଚାଇ ଦେଇଥିଲ । ଏହାକୁ ତା'ର ପ୍ରତିଦାନ ବୋଲି ମନେକର ।''

ହେଞ୍ଚାର୍ଡ଼ଙ୍କ କାନ୍ଧରେ ଭରାଦେଇ ସେ ଦୁଇଜଣ ଚାଲିଛନ୍ତି, ହଠାତ୍ ଲୁସେଟାଙ୍କର ମନେପଡ଼ିଲା ଯେ ଖମାର ଆଡ଼କୁ ଦୌଡ଼ିଯିବା ବେଳେ ବାଟରେ ତାଙ୍କ ପର୍ଶ (ଟଙ୍କା ମୁଣି)ଟା ଖସିପଡ଼ିଛି ।''

''ଆପଣ ଯାଉଥାନ୍ତୁ କି, ମୁଁ ଯାଇ ପର୍ଶଟା ଗୋଟାଇଆଣେ'' କହି ଏଲିଜାବେଥ୍ ପଛକୁ ଫେରିଲା । ହେଞ୍ଚାର୍ଡ଼ ଓ ଲୁସେଟା କଥାଭାଷା ହୋଇ କାଷ୍ଟରବ୍ରିଜ୍ ଆଡ଼େ ଚାଲିଲେ । ବିଲମାଳ ଭିତରେ ଖୋଜୁ ଖୋଜୁ କିଛି ସମୟ ମଧ୍ୟରେ ଏଲିଜାବେଥ୍‌କୁ ପର୍ଶଟା ମିଳିଗଲା । ସେ ପର୍ଶଟା ନେଇ ସଡ଼କ ଉପରକୁ ଫେରିଆସି ଦେଖେ ତ ସ୍ୱୟଂ ଫରଫ୍ରେ ଗାଡ଼ି ଚଳାଇ ପୋର୍ଟ ବ୍ରେଡି ଆଡୁ ଚାଲିଆସୁଛନ୍ତି । ତାକୁ ଦେଖି ଫରଫ୍ରେ ଭାବିଲେ, ଲୁସେଟା ବି ସେଠାକୁ ଆସିଛନ୍ତି । ତେଣୁ ସେ ଗାଡ଼ି ଅଟକାଇ ଏଲିଜାବେଥ୍ ସହିତ ଆଳାପ କରୁ କରୁ ଏଲିଜାବେଥ୍ ଅଳ୍ପ ସମୟ ତଳେ ଘଟିଯାଇଥିବା ଦୁର୍ଘଟଣା ବିଷୟ କହିଗଲା । ଫରଫ୍ରେ ବ୍ୟସ୍ତ ହୋଇ ପଚାରିଉଠିଲେ, ''କ'ଣ କହିଲ ! ଲୁସେଟା ! ହେଞ୍ଚାର୍ଡ଼ ସାହେବଙ୍କ ସହିତ ଘରକୁ ଫେରିଛନ୍ତି !''

''ହଁ, ସେ ତ ତାଙ୍କୁ ସଙ୍ଗରେ ନେଇଗଲେ; ଘରେ ପହଞ୍ଚିଯିବେଣି କି କ'ଣ ।''

''ଆପଣ ତା'ହେଲେ ଭାବୁଛନ୍ତି, ସେ ଚାଲି ଚାଲି ଘରକୁ ଯାଇପାରିବେ ?''

''ହଁ, ବିଶେଷ କିଛି କ୍ଷତି ହୋଇନାହିଁ ଯେ ।''

ଫର୍‌ଫ୍ରେ ବ୍ୟସ୍ତତା ନଦେଖାଇ ଏଲିଜାବେଥ୍‌କୁ ଗାଡ଼ିରେ ବସାଇ ଧୀରେ ଧୀରେ ଗାଡ଼ି ଚଳାଇନେଲେ । ଏଲିଜାବେଥ୍ ଏ ମନ୍ଥର ଗତିର ଉଦ୍ଦେଶ୍ୟ ବୁଝିଗଲା । ଫର୍‌ଫ୍ରେ ଭାବିଲେ ହେଞ୍ଚାର୍ଡ଼ ଲୁସେଟାଙ୍କୁ ଗୋଟିଏ ବଡ଼ ବିପଦରୁ ଉଦ୍ଧାର କରିଛନ୍ତି, ତାଙ୍କୁ ସଙ୍ଗରେ ନେଇ ଘରେ ଛାଡ଼ିଆସିଲେ ହେଞ୍ଚାର୍ଡ଼ ଯେଉଁ ଟିକକ ଆନନ୍ଦ ଲାଭ କରିବେ, ବିଚରାଙ୍କୁ ସେଥିରୁ ବଞ୍ଚିତ କରାଇବା ଉଚିତ ହେବନାହିଁ ।

ପାଖରେ ଅନ୍ୟ କେହି ନଥିବାରୁ ହେଞ୍ଚାର୍ଡ଼ ଲୁସେଟାଙ୍କ ସହିତ ଅବାଧରେ ଆଳାପ କରିଚାଲିଲେ, ''ଏହି ଦୁଇଦିନ ହେଲା ତୁମକୁ ଦେଖିବାଲାଗି ମୁଁ ବହୁତ ବ୍ୟସ୍ତ ହୋଇପଡ଼ିଛି । ସେଦିନ ରାତିରେ ଯେଉଁଭଳିଭାବରେ ତୁମ ମୁହଁରୁ ଶପଥଟା ଆଦାୟ କଲି, ସେଥିପାଇଁ ମୁଁ ବିଶେଷ ଦୁଃଖିତ । ତୁମେ ସେ ଯେଉଁ କଥା କହିଲ, 'ପ୍ରକୃତରେ ଯଦି ପୁରୁଷ ହୋଇଥିବ, ତେବେ ଏମିତି ଅଡ଼ିବସିବନାହିଁ ।' ସେଥିରେ ମୁଁ ସତରେ ବଡ଼ ଲଜ୍ଜିତ ହୋଇଗଲି । ...ନା, ନା, ତୁମ ମନରେ କଷ୍ଟ ଦେବାକୁ ମୁଁ ଆଦୌ ଚାହେଁନା । ଆମ ବିବାହଟାକୁ ବର୍ଷେ ବା ଦୁଇବର୍ଷ ଗଡ଼ାଇଦେବାକୁ ମୁଁ ରାଜି ଅଛି ଲୁସେଟା !''

ଲୁସେଟା କହିଲେ, ''କିନ୍ତୁ...କିନ୍ତୁ ମୁଁ କ'ଣ ଅନ୍ୟ କିଛି ଉପାୟରେ ତୁମର ଉପକାର ଶୁଝିପାରିବିନାହିଁ ? ତୁମେ ଆଜି ମୋର ଜୀବନ ରକ୍ଷା କରିଥିବାରୁ ମୁଁ ତୁମଠାରେ କୃତଜ୍ଞ । ମୁଁ ବର୍ତ୍ତମାନ ଯଥେଷ୍ଟ ସମ୍ପତ୍ତିର ମାଲିକ; ତୁମ ଉପକାର ଶୁଝିବାଲାଗି ମୁଁ କ'ଣ କରିପାରେ କୁହ ?''

ହେଞ୍ଚାର୍ଡ଼ ଏପରି କିଛି ଆଶା କରିନଥିଲେ । ସେ କିଛି ସମୟ ଚିନ୍ତା କରିବା ପରେ କହିଲେ, ''ହଁ, ଗୋଟାଏ କାମ କରିପାରିବ ? ଯଦି ପାରିବ, ତେବେ ମୋତେ ଗୋଟାଏ ଅତ୍ୟନ୍ତ ଗୋପନ କଥା ଖୋଲି କହିବାକୁ ପଡ଼ିବ । କଥା ହେଲା, ତୁମେ ତ ଶୁଣିଥିବ, ଏବର୍ଷ ବ୍ୟବସାୟରେ ମୋର ଭାରି ମନ୍ଦଭାଗ୍ୟ ପଡ଼ିଛି; ଗୁଡ଼ାଏ ଟଙ୍କା କ୍ଷତି ହୋଇଯାଇଛି ।''

ଆଗ୍ରହାନ୍ୱିତ ହୋଇ ଲୁସେଟା କହିଲେ, ''ମୁଁ ତା'ହେଲେ କିଛି ଟଙ୍କା ଧାର ଦେଇଥିବି ?''

କ୍ରୋଧ ପ୍ରକାଶ କରି ହେଞ୍ଚାର୍ଡ଼ କହିଲେ, ''ମୁଁ କୌଣସି ସ୍ତ୍ରୀଲୋକଠାରୁ ଟଙ୍କାପଇସା ନେବାକୁ ଚାହେଁନା । ନା, ଲୁସେଟା ! ତୁମେ ମୋପାଇଁ ଅନ୍ୟ ଗୋଟାଏ କଥା କରିପାରିବ ଏବଂ ସେଥିରେ ଯଦି କୃତକାର୍ଯ୍ୟ ହୁଅ ତେବେ ମୋର ଯଥେଷ୍ଟ ଉପକାର ହେବ । ମୁଁ ଗ୍ରୋଏର୍‌ଠାରୁ ଗୁଡ଼ାଏ ଟଙ୍କା ଧାର କରିଛି । ଟଙ୍କାଟା ନଗଦ ପରିଶୋଧ କରିବାକୁ ସର୍ତ୍ତ ରହିଛି; ଯଦି ତୁମେ ତାକୁ କୌଣସି ପ୍ରକାରେ ପ୍ରବର୍ତ୍ତାଇ ପନ୍ଦର କୋଡ଼ିଏଟା ଦିନ ଅପେକ୍ଷା କରିବାକୁ ମଙ୍ଗାଇପାରନ୍ତ, ତେବେ ମୁଁ ସେହି ସମୟ ଭିତରେ ଟଙ୍କାପଇସା ଯୋଗାଡ଼ କରି ଦେଇପାରନ୍ତି; ମୋ ସମ୍ମାନଟା ରହିଯାଆନ୍ତା । ସେ ଜାଣେ ଯେ ତୁମ ପାଖରେ ବେଶ୍ ବହୁତ କିଛି ସମ୍ପତ୍ତି ଅଛି । ତୁମେ ଯଦି ଏପରି କିଛି କରନ୍ତ ବା କହନ୍ତ ଯେ ଏହି ପନ୍ଦର କୋଡ଼ିଏ ଦିନ ମଧ୍ୟରେ ମୋ ସହିତ ତୁମର ବିବାହ ହୋଇଯାଉଛି, ତେବେ ସେ କଥାଟା ବିଶ୍ୱାସ କରି ଋଣଟା ଶୀଘ୍ର ପରିଶୋଧ କର ବୋଲି ମୋ ପାଖକୁ ତଲବ ପଠାନ୍ତାନାହିଁ । ଏସବୁ କଥା ଅନ୍ୟ କେହି ଜାଣିବା ଆବଶ୍ୟକନାହିଁ; ତାକୁ କହିବ, ସେ ବି ଏ କଥାଟା ଗୋପନ ରଖିବ । ପନ୍ଦର କୋଡ଼ିଏ ଦିନ ମଧ୍ୟରେ ମୁଁ ଟଙ୍କା ସଂଗ୍ରହ କରି ଶୁଝିଦିଅନ୍ତି ଏବଂ କହନ୍ତି ଯେ, କେତେକ ଅସୁବିଧାବଶତଃ ଆମ ବିବାହଟା ବର୍ଷେ ଦୁଇବର୍ଷ ଗଡ଼ାଇ ଦିଆଯାଇଛି । କେହି କିଛି ଜାଣିବା ପୂର୍ବରୁ ତୁମେ ମତେ ଏତକ ସାହାଯ୍ୟ କରିପାରନ୍ତ ।''

ବେଳ ଗଡ଼ି ମାଛିଅନ୍ଧାର ହୋଇଯାଇଥାଏ । ଏହି କଥାଗୁଡ଼ାକ ଲୁସେଟାଙ୍କ ଉପରେ କି ପ୍ରଭାବ ପକାଇଲା ତାହା ଲୁସେଟାଙ୍କ ମୁହଁରୁ ହେଞ୍ଚାର୍ଡ଼ ସହଜରେ ଅନୁମାନ କରିପାରିଲେନାହିଁ । କିଛି ସମୟ ପରେ ଅବଶ୍ୟ ଲୁସେଟାଙ୍କ ଶୁଖିଲା ମୁହଁରୁ ସବୁ ସ୍ପଷ୍ଟ ହୋଇଗଲା । ସେ କହିଲେ, ''ଯଦି ଅନ୍ୟ କିଛି ହୋଇଥାନ୍ତା, ତେବେ... ।''

''ଏଇଟା ତ ଅତି ସାମାନ୍ୟ କଥା !''—ହେଞ୍ଚାର୍ଡ଼ ଜଣାଇଲେ ।

''ଏପରି କିଛି କହିବାକୁ ମୋର ଆପତ୍ତି ନଥିଲା; କିନ୍ତୁ କଥା ହେଲା, ମୁଁ ଆଉ ଏପରି କଥା କହିପାରିବିନାହିଁ ।''

''କାହିଁକି ?''

''କାରଣ ଗ୍ରୋଏର୍ ଜଣେ ସାକ୍ଷୀହୋଇ ଠିଆହୋଇଥିଲେ ।''

''ସାକ୍ଷୀ ? କେଉଁଠି ? କେତେବେଳେ ?''

ଲୁସେଟା ଶଙ୍କିତ ହୋଇ ପ୍ରକାଶ କଲେ, ''ମୋର ବିବାହବେଳେ ।''

''ତୁମର ବିବାହ ?''

''ହଁ, ଡୋନାଲ୍‌ଡ୍ ଫରଫ୍ରେଙ୍କ ସହିତ ମୋର ବିବାହବେଳେ ଗ୍ରୋଏର୍ ଗିର୍ଜାରେ ଆମର ସାକ୍ଷୀ ହୋଇଥିଲେ । ସତ କହୁଛି ମାଇକେଲ୍ ମୁଁ ଡୋନାଲ୍‌ଡ୍‌ଙ୍କର ଭାର୍ଯ୍ୟା ହୋଇସାରିଛି । ଏହି ସପ୍ତାହରେ ପୋର୍ଟ ବ୍ରେଡିରେ ଗିର୍ଜାରେ ଗ୍ରୋଏର୍‌ଙ୍କ ଉପସ୍ଥିତିରେ ଆମ ଦୁଇ ଜଣଙ୍କର ବିବାହ ହୋଇଗଲା । ତେଣୁ...''

ହେଞ୍ଚାର୍ଡ଼ ତଟସ୍ଥ ହୋଇ ଠିଆହୋଇଗଲେ । ତାଙ୍କର ସେ ସ୍ଥିର ନିଶ୍ଚଳ ପ୍ରତିମୂର୍ତ୍ତି ଦେଖି ଲୁସେଟା ଆହୁରି ଶଙ୍କିତ ହୋଇଗଲେ, କହିଲେ ଯେ, ଗ୍ରୋଏର୍‌ର ସମସ୍ତ ଋଣ ପରିଶୋଧ କରିବାଲାଗି ସେ ଟଙ୍କା ସାହାଯ୍ୟ କରିବାକୁ ପ୍ରସ୍ତୁତ । ମୌନ ଭଙ୍ଗ କରି ହେଞ୍ଚାର୍ଡ଼ ରୁକ୍ଷ କଣ୍ଠରେ ପଚାରିବସିଲେ, ''ତାକୁ ବିବାହ କଲ ? ମୋତେ ବିବାହ କରିବ ବୋଲି ଜବାବ ଦେଇ ଶପଥ କଲ, ଅଥଚ ବିବାହ କଲ ତାକୁ ?''

ଲୁସେଟାଙ୍କ ଆଖିରୁ ଝରିଆସିଲା ଲୁହ । ସେ ସବୁକଥା ବୁଝାଇଦେବାକୁ ଯାଇ କାତର କଣ୍ଠରେ କହିଲେ, ''ମାଇକେଲ୍, ମୋ ପ୍ରତି ତୁମେ ଏପରି ନିଷ୍ଠୁର ହୁଅନାହିଁ । ମୁଁ ସବୁକଥା କହିଦେଉଛି । ମୁଁ ତାଙ୍କୁ ଅତି ଭଲ ପାଉଥିଲି । ମୋ ମନରେ ଭୟ ହେଲା ଯେ ମୋତେ ପାଇବାଲାଗି ତୁମେ ତାଙ୍କୁ ଆମର ଅତୀତ କଥାଗୁଡ଼ାକ କହିଦେଇ ମୋଠାରୁ ତାଙ୍କୁ ଦୂରେଇନେବ । ପୁଣି ଏ ଭିତରେ ମୁଁ ତୁମ ନିକଟରେ ଶପଥ କରି ଜବାବ ଦେବା ପରେ ଶୁଣିବାକୁ ପାଇଲି ଯେ ତୁମେ କାଳେ ଗୋଟାଏ ମେଳା ପଡ଼ିଆରେ ନିଜ ବିବାହିତା ସ୍ତ୍ରୀକୁ ଗାଈ-ଛେଳି ପରି ବିକିଦେଇଥିଲ । ଏ ଅବସ୍ଥାରେ ତୁମକୁ ବିବାହ କରିବାକୁ ମୁଁ କିପରି ମନ ବଳାନ୍ତି କହିଲ ? ଦେଖିଲି, ମୁଁ ଯଦି ଶୀଘ୍ର ଫର୍‌ଫ୍ରେଙ୍କୁ ବିବାହ କରି ନପକାଏ, ତୁମେ ତାଙ୍କୁ କେତେବେଳେ ନାହିଁ କେତେବେଳେ ଆମ ଅତୀତ କଥା ସବୁ କହିଦେବ; ମୁଁ ତାଙ୍କୁ ଚିରଦିନଲାଗି ହରାଇବସିବି । ତେଣୁ ମୁଁ ଆଉ ଅପେକ୍ଷା କରିପାରିଲିନାହିଁ । ମୋର ଅନୁରୋଧ, ମାଇକେଲ୍ ! ତୁମେ ଆଉ ତାଙ୍କୁ ମୋ ବିଷୟରେ କିଛି କହିବନାହିଁ ।''

''ତା'ହେଲେ ମୁଁ ଆଜି ତା ଭାର୍ଯ୍ୟାର ଜୀବନ ରକ୍ଷାକଲି !''

''ହଁ, ଏବଂ ସେଥିଲାଗି ସେ ତୁମ ନିକଟରେ କୃତଜ୍ଞ ରହିବେ ।''

ହେଞ୍ଚାର୍ଡ୍‌ଙ୍କର ସବୁ କ୍ରୋଧ ଏକାଠି ଅଜାଡ଼ି ହୋଇପଡ଼ିଲା, ''ଧିକ୍ ସେ କୃତଘ୍ନତାକୁ । ମିଥ୍ୟାବାଦିନୀ, ତୁମେ ଦିନେ ଶପଥ କରି ଜବାବ୍ ଦେଇଥିଲ !''

ଲୁସେଟାଙ୍କ କଣ୍ଠରେ ବି ଅଭିଯୋଗ ଫୁଟିଉଠିଲା, ଦେଇଥିଲି କ'ଣ, ଧମକ-ଚମକ ଦେଖାଇ ତୁମେ ମୋଠାରୁ ସେ ଜବାବଟା ଆଦାୟ କରି ନେଇଥିଲ । କିନ୍ତୁ...ମୁଁ ସେତେବେଳେ ତୁମ ଅତୀତ ଇତିହାସ ଜାଣିନଥିଲି ।''

''ଇତିହାସ ଯେତେବେଳେ ଜାଣିଗଲଣି, ମୋତେ ତା'ହେଲେ ସ୍ପଷ୍ଟଭାବରେ ଚିହ୍ନରଖ; ଏଥର ମୁଁ ତୁମକୁ ଉପଯୁକ୍ତ ଶାସ୍ତି ଦେଇଦେବି । ତୁମର ଏ ଯେଉଁ ନୂତନ ସ୍ୱାମୀ, ତାଙ୍କ କାନରେ ଗୋଟାଏ ପଦ କଥା ପକାଇଦେଲେ, ତୁମର ସବୁ ସୁଖ-ସ୍ୱପ୍ନ ଧୂଳିରେ ମିଶିଯିବ ।''

''ମାଇକେଲ୍ ! ମୋତେ ଦୟା କର, ମାଇକେଲ୍ ! ମୋତେ କ୍ଷମା କର ।''

''ଦୟା ! ଦିନ ଥିଲା ଯେତେବେଳେ ତୁମେ ଦୟାର ପାତ୍ରୀ ଥିଲ; କିନ୍ତୁ ଆଜି ସେ ଦିନ ବଦଳିଯାଇଛି ।''

''ତୁମର ସବୁ ଋଣ ମୁଁ ପରିଶୋଧ କରିଦେବି ମାଇକେଲ୍ !''

'ଧନ୍ୟବାଦ, ବୃଥା ବାଜେ ଗପ ନକରି ସିଧା ଘରକୁ ଚାଲିଯାଅ ।' କହି ହେଞ୍ଚାର୍ଡ୍ ସେଠାରୁ ଚାଲିଗଲେ । ଭୀତତ୍ରସ୍ତ ହୋଇ ଲୁସେଟା ଫେରିଆସିଲେ ନିଜ ଘରକୁ ।

## ଏଗାର

ଆତଙ୍କିତ ମନଟାକୁ କୌଣସି ପ୍ରକାରେ ଆଶ୍ୱସ୍ତ କରି ଲୁସେଟା ଫରଫ୍ରେଙ୍କ ଫେରିବା ବାଟକୁ ଚାହିଁରହିଲେ । ଉଭୟଙ୍କ ମଧ୍ୟରେ ପୂର୍ବରୁ ସ୍ଥିର ହୋଇଥାଏ ଯେ ଫରଫ୍ରେ ନିଜ ଭଡ଼ାଘର ଛାଡ଼ିଦେବେ ଏବଂ ଖଣ୍ଡେ ଭଲ ଘର ମିଳିବା ପର୍ଯ୍ୟନ୍ତ ଲୁସେଟାଙ୍କ ସହିତ ହାଇପ୍ଲେସ୍ ହଲ୍‌ରେ ଆସି ରହିବେ । ଘଣ୍ଟାଏ ଖଣ୍ଡେ ପରେ ଫରଫ୍ରେ ଆସି ପହଞ୍ଚିଗଲେ । ତାଙ୍କୁ ଆଣି ବୈଠକଖାନାରେ ବସାଇଦେଇ ଖୁସିଗପ କରୁ କରୁ ଲୁସେଟା କହିଲେ, ''ମୁଁ ଏ ପର୍ଯ୍ୟନ୍ତ ଗୋଟାଏ କଥା କହିପାରିନାହିଁ ।''

''ଆହୁରି କ'ଣ ବାକି ରଖିଛ ?''

''ଏଲିଜାବେଥ୍ ଜେନ୍‌କୁ ମୁଁ ଏପର୍ଯ୍ୟନ୍ତ ଆମ ବିବାହ ଖବରଟା ଦେଇପାରିନାହିଁ ।''

''ସତେ ନା ? ସେ ସେହି ଖମାର ପାଖରୁ ତୁମ ପର୍ଶଟା ନେଇ ଫେରିବାବେଳେ ରାସ୍ତାରେ ମୋ ସହିତ ଦେଖାହେଲା; ମୁଁ ତାଙ୍କୁ ମୋ ଗାଡ଼ିରେ ନେଇଆସିଲି; କିନ୍ତୁ ମୁଁ ବି ଆମ ବିବାହ ବିଷୟରେ ତାଙ୍କୁ କହିପାରିଲିନାହିଁ ।''

''ମୁଁ ଯାଏ, ତାଙ୍କୁ ଖବରଟା ଦେଇଆସେ । ଆଚ୍ଛା ଡୋନାଲ୍ଡ୍, ସେ ଆଗରୁ ଏଠାରେ ଯେପରି ରହିଆସୁଥିଲେ, ବର୍ତ୍ତମାନ ସେପରି ରହିଥାନ୍ତୁ । ବିଚାରୀ ଭାରି ଭଲ ଝିଅଟିଏ, ଆଉ ଘର ବୋଲି କେଉଁଠି ଅଛି ଯେ ଅନ୍ୟଆଡ଼େ ଚାଲିଯିବେ କହିଲ ?''

ସେ କଥାରେ ଆଗ୍ରହ ନଦେଖାଇ ଫରଫ୍ରେ କହିଲେ, ''ଦେଖ, ଯେପରି ସୁବିଧା ହେବ ସେପରି ବ୍ୟବସ୍ଥା କର । ...ଯେତେଦୂର ସମ୍ଭବ ସେ ବୋଧହୁଏ ଏଠାରେ ରହିବାକୁ ଇଚ୍ଛା କରିବେନାହିଁ ।''

ଲୁସେଟା ଏଲିଜାବେଥ୍‌ର କୋଠରିକୁ ଯାଇ ବସୁ ବସୁ ଆରମ୍ଭ କରି-ଦେଲେ, ''ଏଲିଜାବେଥ୍, ମୋର ତୁମକୁ ଗୋଟିଏ, କଥା କହିବାର ଅଛି ।''

ତାଙ୍କ ବକ୍ତବ୍ୟ ଶୁଣିବାଲାଗି ଏଲିଜାବେଥ୍ ଆଗ୍ରହରେ ଚାହିଁରହିଲା । ଲୁସେଟା ପ୍ରଥମେ ଟିକିଏ ଇତସ୍ତତଃ ହୋଇ ଗୋଟାଏ ଅନୁରୋଧ ଜଣାଇଲେ, ''ଅବଶ୍ୟ ମୋର ଅନୁରୋଧ, କଥାଟା ଅନ୍ୟ କାହାକୁ କହିବନାହିଁ ।''

''ନା, ମୁଁ କାହାକୁ କହିବିନାହିଁ ।''

''ତା' ହେଲେ ଶୁଣ, କଥାଟାକୁ ମୁଁ ଟିକିଏ ମୂଳରୁ ଆରମ୍ଭ କରେ— କେତେ ବର୍ଷ ତଳେ ଜେରେସୀରେ ମୁଁ ଜଣେ ଲୋକଙ୍କ ସଂସ୍ପର୍ଶରେ ଆସିଥିଲି । ବିଚରା ସେତେବେଳେ ଭାରି ଅସୁସ୍ଥ ଥାଆନ୍ତି । ତାଙ୍କରି ସେବା ଶୁଶ୍ରୂଷାରେ ନିଜକୁ ମୁଁ ଏତେ ସଂଶ୍ଳିଷ୍ଟ କରିଦେଲି ଯେ, କିଛି ଦିନ ମଧ୍ୟରେ ଆମେ ପରସ୍ପରକୁ ଭଲପାଇବସିଲୁ । ସେ ସେତେବେଳେ ଭାବିଥିଲେ ଯେ ତାଙ୍କ ସ୍ତ୍ରୀ ବୋଧହୁଏ ମରିଗଲେଣି; କାରଣ ବହୁ ଦିନ ଧରି ତାଙ୍କର କୌଣସି ପତ୍ତା ମିଳୁନଥିଲା । ମୁଁ ତାଙ୍କୁ ବିବାହ କରିବାକୁ ପ୍ରତିଶ୍ରୁତି ଦେଇଦେଲି । କିନ୍ତୁ ଦୈବକ୍ରମେ ଦିନେ ତାଙ୍କ ଭାର୍ଯ୍ୟା ତାଙ୍କ ନିକଟକୁ ଫେରିଆସିଲେ । ଫଳରେ ସେ ତାଙ୍କୁ ଗ୍ରହଣ କରି ମୋଠାରୁ ଦୂରେଇଗଲେ । ବର୍ତ୍ତମାନ ସେ ଭଦ୍ରମହିଳା ମରିଗଲେଣି ଏବଂ ସେ ଭଦ୍ରଲୋକ ବିପତ୍ନୀକ ହେବା ପରେ ବାରମ୍ବାର ମୋ ପାଖକୁ ଆସି ବିବାହ ପ୍ରସ୍ତାବ ଦେଉଛନ୍ତି । କିନ୍ତୁ ତୁମେ କହ ଏଲିଜାବେଥ୍ ଜେନ୍, ସେ ଯେତେବେଳେ

ଥରେ ମୋତେ ଛାଡ଼ିଦେଇ ନିଜ ପ୍ରଥମ ସ୍ତ୍ରୀକୁ ନେଇ ଘରଦ୍ୱାର କଲେ, ତାଙ୍କର ଆଉ ବର୍ତ୍ତମାନ ମୋ ଉପରେ କି ଅଧିକାର ଅଛି ?''

ଏ ବିପତ୍ନୀକ ଲୋକଟି ଯେ କିଏ ସେ, ଏଲିଜାବେଥ୍ ତାହା ସହଜରେ ଅନୁମାନ କରିନେଲା । ସେ ଟିକିଏ ଗମ୍ଭୀର ହୋଇ କହିଲା, ''କିନ୍ତୁ ଆପଣ ତାଙ୍କୁ ଅତୀତରେ ଯେଉଁ ପ୍ରତିଶ୍ରୁତି ଦେଇଥିଲେ, ବର୍ତ୍ତମାନ କ'ଣ ଆଉ ଥରେ ସେହି ପ୍ରତିଶ୍ରୁତି ଦେଇନାହାନ୍ତି ?''

''ମୁଁ ଆଉ ଦେଇଛି କ'ଣ; ସେ କେବଳ ଧମକ-ଚମକ ଦେଖାଇ ମୋଠାରୁ ସେତକ ପୁଣି ଆଦାୟ କରିନେଇଛନ୍ତି ।''

''ତା ସତ, ତଥାପି ମୁଁ କାହିଁକି ଭାବୁଛି ଅତୀତର ସେହି ସମ୍ପର୍କ ଦୃଷ୍ଟିରୁ ଆପଣ ତାଙ୍କୁହିଁ ବିବାହ କରିବା ଉଚିତ ହେବ ।''

ଲୁସେଟା କହିଉଠିଲେ, ''କିନ୍ତୁ ତାଙ୍କ ପରି ଭୟଙ୍କର ଲୋକକୁ ବିବାହ କରିବାକୁ ମୁଁ ଡରିଗଲି । ଭାରି ଭୟଙ୍କର ସେ ଲୋକ; କଥା ହେଲା ବିବାହ କରିବାଲାଗି ଆଉ ଥରେ ପ୍ରତିଶ୍ରୁତି ଦେଇଦେବା ପରେ ମୁଁ ତାଙ୍କର ଏ ଅସଲ ପରିଚୟ ପାଇଲି ।''

ଏଲିଜାବେଥ୍ ଜେନ୍ ଦୃଢ଼କଣ୍ଠରେ କହିଲା, ''ଏ ସମସ୍ୟାର ଗୋଟିଏ ମାତ୍ର ସମାଧାନ ରହିଛି ଏବଂ ସେଇଟି ହେଉଛି ଆପଣ ହୁଏତ ହେଞ୍ଚାର୍ଡ଼ଙ୍କୁ ବିବାହ କରନ୍ତୁ, ନଚେତ୍ ଅବିବାହିତ ହୋଇ ରହିଯାଆନ୍ତୁ ।''

ଲୁସେଟା ଏପରି ଏକ ପ୍ରସ୍ତାବ ଶୁଣିବାଲାଗି ପ୍ରସ୍ତୁତ ନଥିଲେ । ସେ ନିଜର ବିରକ୍ତି ଲୁଚାଇବାଲାଗି ଡାହାଣ ହାତରେ ମୁହଁ ଘୋଡ଼ାଇଦେଇ ବାଆଁ ହାତ ବଢ଼ାଇ ଏପରି ପ୍ରସ୍ତାବ ଦିଅନାହିଁ ବୋଲି ଏଲିଜାବେଥ୍‌କୁ ଅନୁରୋଧ କରିବା ସମୟରେ ସେ ବାଆଁ ହାତରେ ପିନ୍ଧିଥିବା ବିବାହ ମୁଦିଟି ଏଲିଜାବେଥ୍ ଆଖିରେ ପଡ଼ିଗଲା । ବିବାହ-ମୁଦିଟା ଦେଖି ସେ କହିଉଠିଲା, ''ଏଁ ! ଆପଣ ତା'ହେଲେ ତାଙ୍କୁ ବିବାହ କରିସାରିଛନ୍ତି ? ସତରେ ଆପଣଙ୍କର ହୃଦୟ ଅତି ମହତ୍ ।''

ବ୍ୟସ୍ତ ହୋଇ ଲୁସେଟା କହିଉଠିଲେ, ''ତୁମକୁ ମୁଁ କହିପାରିବିନି ଏଲିଜାବେଥ୍ ଜେନ୍... ଏ ଭିତରେ ମୁଁ ଅନ୍ୟ ଜଣକୁ ବିବାହ କରିସାରିଛି । ...ନଚେତ୍, ମୁଁ ହେଞ୍ଚାର୍ଡ଼ଙ୍କ କବଳରୁ ରକ୍ଷା ପାଇପାରିନଥାନ୍ତି ।''

ଏଲିଜାବେଥ୍ ତଟସ୍ଥ ହୋଇଗଲା । ତା'ର ଆହତ କଣ୍ଠରୁ ବାହାରିଆସିଲା, ''ଆପଣ ତା'ହେଲେ ଫରଫ୍ରେଙ୍କୁ ବିବାହ କଲେ ?''

ଲୁସେଟା ଆତ୍ମସ୍ଥ ହୋଇସାରିଥାନ୍ତି । ସେ ସମ୍ମତି ଜଣାଇ କହିଲେ, ''ମୋ ସ୍ୱାମୀ ବର୍ତ୍ତମାନ ତଳ ବୈଠକଖାନାରେ ବସିଛନ୍ତି । ଖଣ୍ଡେ ଭଲ ଘର ପାଇବା ପର୍ଯ୍ୟନ୍ତ ଆମେ ଏଇଠି ରହିବାଲାଗି ସ୍ଥିର କରିଛୁ । ମୁଁ ତାଙ୍କୁ କହୁଛି ଯେ ତୁମକୁ ବି ଏଇଠି ଆମରି ସାଥିରେ ରଖିବା ମୋର ଇଚ୍ଛା ।''

ଏଲିଜାବେଥ୍ ଜେନ୍ ବ୍ୟସ୍ତ ହୋଇ କହିଲା, ''ମୋତେ ଟିକିଏ କଥାଟାକୁ ବିଚାର କରିବାଲାଗି ସମୟ ଦିଅନ୍ତୁ ।''

ଲୁସେଟା ବୈଠକଖାନାକୁ ଚାଲିଗଲେ । ସଙ୍ଗେ ସଙ୍ଗେ ଏଲିଜାବେଥ୍ ଜେନ୍ ବି ଲୁଗାପଟା ପିନ୍ଧି ଘରୁ ବାହାରିପଡ଼ିଲା । ସୁସାନ୍ ହେଞ୍ଚାର୍ଡ଼ଙ୍କ ଝିଅ ସେ । ସେ ମୁହୂର୍ତ୍ତକ ମଧ୍ୟରେ ସ୍ଥିର କରିନେଲା, ସେ ଆଉ ସେଠାରେ ରହିପାରିବନାହିଁ । କେବଳ ଯେ ଲୁସେଟାଙ୍କର ଆଚରଣ ତା ମନକୁ କଷ୍ଟଦେଲା, ତା ନୁହେଁ; ଫର୍‌ଫ୍ରେ ଥିଲେ ତା'ର ଅତି ନିଜର । ସେ ତାକୁ ହୃଦୟ ଦେଇ ଭଲପାଇଆସିଥିଲେ; ଅଥଚ ବିବାହ କଲେ ଅନ୍ୟ ଜଣକୁ । ଏପରି ପରିସ୍ଥିତିରେ ସେ କିପରି ବା ସେଠାରେ ରହିପାରନ୍ତା ? ସେହି ସନ୍ଧ୍ୟାରେ ସେ ଖଣ୍ଡିଏ ଭଡ଼ାଘର ଠିକ୍ କରିନେଲା । ଜଣେ ଲୋକ ସାହାଯ୍ୟରେ ଗାଡ଼ିରେ ଜିନିଷପତ୍ର ଲଦିଦେଲା । ଲୁସେଟାଙ୍କ ଉଦ୍ଦେଶ୍ୟରେ ଖଣ୍ଡେ ଚିଠି ଲେଖିଦେଇ ସେହି ରାତିରେହିଁ ହାଇପ୍ଲେସ୍ ହଲ୍ ଛାଡ଼ି ଚାଲିଗଲା । ସେ ଭଡ଼ା ନେଇଥିବା ଘରଟି ହେଞ୍ଚାର୍ଡ଼ଙ୍କ ଘର ସାମନାରେ । ତାକୁ ଅନ୍ତତଃ ଏତିକି ଆଶ୍ୱାସନା ମିଳିଲା ଯେ ବାପାଙ୍କ ଅସମୟରେ ସେ କିଛିଟା ସାହାଯ୍ୟ କରିବାର ସୁଯୋଗ ପାଇବ; ତାଙ୍କର ଗତିବିଧି ଉପରେ ବି ନଜର ରଖିପାରିବ ।

ତେଣେ ଲୁସେଟାଙ୍କର ବିବାହ ପରେ ପରେ ହେଞ୍ଚାର୍ଡ଼ଙ୍କର ଅଧଃପତନ ଆରମ୍ଭ ହୋଇଗଲା । ମନେହେଲା, ସବୁଗୁଡ଼ାକ ବିପଦ ଯେପରି ଏକଜୁଟ ହୋଇ ମାଡ଼ିଆସିଲା । ସେ ବଡ଼ ଆଶା କରିଥିଲେ ଜଣେ ପୁରୁଣା ବନ୍ଧୁଙ୍କଠାରୁ କିଛି ଟଙ୍କା ଧାରଆଣି ଅବସ୍ଥାଟା ସମ୍ଭାଳିନେବେ । ବନ୍ଧୁଜଣକ ଧନୀ; ମହାଜନୀ କରନ୍ତି ! ସେ ବିଚରା ବି ତାଙ୍କୁ ସାହାଯ୍ୟ କରିପାରିଲେନାହିଁ । ଅର୍ଥାଭାବ ହିଁ ସବୁ ପତନର ମୂଳରେ ଥାଏ । କରଜ ପରିଶୋଧ କରିବା ଲାଗି ହେଞ୍ଚାର୍ଡ଼ଙ୍କୁ ସବୁ ଘରବାଡ଼ି ବିକ୍ରି କରିଦେବାକୁ ପଡ଼ିଲା । ସେ ଶେଷରେ ସହରତଳି ଅଞ୍ଚଳରେ ଖଣ୍ଡିଏ ଛୋଟ ଘର ଭଡ଼ା ନେଇ ରହିବାକୁ ବାଧ୍ୟ ହେଲେ । ହେଞ୍ଚାର୍ଡ଼ ଯେ ଏଥର ସର୍ବସ୍ୱାନ୍ତ ହୋଇଗଲେ ସେଥିରେ ଆଉ ସନ୍ଦେହ ରହିଲାନାହିଁ; ତଥାପି ଏଲିଜାବେଥ୍‌ର

ବିଶ୍ୱାସ ଥାଏ, ତା ବାପା ଏତେ ଶୀଘ୍ର ଭାଙ୍ଗିପଡ଼ିବେ ନାହିଁ । ଉପଦେଶ ଦେଇ ସେ ବାପାଙ୍କ ନିକଟକୁ ଖଣ୍ଡେ ଚିଠି ଲେଖିଲା ; କିନ୍ତୁ ହେଞ୍ଚାର୍ଡ଼ ସେ ଚିଠିର ଉତ୍ତର ଦେଲେନାହିଁ । ଶେଷକୁ ଦିନେ ବାପାଙ୍କୁ ଦେଖା କରି ତାଙ୍କୁ ସବୁକଥା ବୁଝାଇ କହିବ ବୋଲି ବାହାରିପଡ଼ିଲା । କିନ୍ତୁ ହେଞ୍ଚାର୍ଡ଼ ତାକୁ ସାକ୍ଷାତ୍ ହିଁ ଦେଲେନାହିଁ । ବିଚାରୀ ନିରାଶ ହୋଇ ଘରକୁ ଫେରିଆସିଲା ।

ହେଞ୍ଚାର୍ଡ଼ଙ୍କୁ ଏ ବିଷୟଟା ବେଶି ଦୁଃଖ ଦେଲା ଯେ ସେ ଯେଉଁ ଘରବାଡ଼ି ସବୁ ବିକିଦେଲେ, ସେସବୁ ଫର୍‌ଫ୍ରେ କିଣିନେଲେ । ମର୍ମାହତ ହୋଇ ହେଞ୍ଚାର୍ଡ଼ କହିହେଲେ, ''ସହରରେ କେତେ ଘର ନଥିଲା ? ସେ କିନ୍ତୁ ମୋ ଘରଟା କିଣିବାକୁ ଟାକିବସିଥିଲା ; ସେ ହିଁ ମୋର ସର୍ବନାଶ କରିଦେଲା । ସେ ମୋର ସବୁ କିଣିନେବ, ଏପରି କି, ମୁଁ ମରିଗଲେ ମୋ ଲାସ୍‌ଟାକୁ ବି ସେ କିଣିନେବାକୁ ପଛେଇବନାହିଁ ।''

ମନରେ ଯାହାର ଏ ପ୍ରକାର ଧାରଣା, ସେ କାହିଁକି ଫର୍‌ଫ୍ରେଙ୍କଠାରୁ କୌଣସି ଉପକାର ଆଶା କରନ୍ତେ ? ହଠାତ୍ ଦିନେ ବଜାରରେ ଦୁଇଜଣଙ୍କର ସାକ୍ଷାତ୍ ହୋଇଗଲା । ଫର୍‌ଫ୍ରେ ପଚାରିଲେ, ''ଆଜ୍ଞା, ଶୁଣିଲି ଆପଣ କାଳେ ଇଂଲଣ୍ଡ ଛାଡ଼ି ଚାଲିଯାଉଛନ୍ତି ?''

ହେଞ୍ଚାର୍ଡ଼ କହିଲେ, ''ହଁ, ସେଥର ତୁମେ ଯେଉଁଠାକୁ ଚାଲିଯିବାକୁ ବସିଥିଲ, ମୁଁ ବର୍ତ୍ତମାନ ସେଇଠିକି ଚାଲିଯିବାକୁ ବସିଛି । ସେତେବେଳେ ମୁଁ ହିଁ ତୁମକୁ ଅଟକାଇ ଦେଇଥିଲି । ସେତେବେଳେ ମୁଁ ମେୟର ଥିଲି, ଧନସମ୍ପଦ ଥିଲା, ପ୍ରତିପତ୍ତି ବି ଥିଲା । ଆଜି କିନ୍ତୁ ଦିନ ବଦଳିଯାଇଛି । ସେଦିନ ତୁମେ ଅଭାବରେ ପଡ଼ିଥିଲ; ଆଜି ମୁଁ ଅଭାବରେ ପଡ଼ିଛି, ପକେଟରେ ଫଟା ପାହୁଲାଟାଏ ବି ନାହିଁ । ଅବସ୍ଥା ସବୁଦିନ ସମାନ ରହେନାହିଁ, ଫର୍‌ଫ୍ରେ !''

ଦରଦ ଦେଖାଇ ଫର୍‌ଫ୍ରେ କହିଲେ, ''ମୋର ଗୋଟିଏ ଅନୁରୋଧ ରଖନ୍ତୁ । ସେଦିନ ଆପଣଙ୍କ ଉପଦେଶ ମାନି ମୁଁ ବିଦେଶ ଯିବା ବନ୍ଦ ରଖିଦେଲି । ବର୍ତ୍ତମାନ ମୋର ଅନୁରୋଧ ରଖି ଆପଣ ବିଦେଶ ଚାଲିନଯାଇ ଏଇଠି ରହିଯାଆନ୍ତୁ ।''

ହେଞ୍ଚାର୍ଡ଼ କିନ୍ତୁ ଭର୍ତ୍ସନା କରିବା ଭଙ୍ଗିରେ ଆରମ୍ଭ କଲେ, ''କ'ଣ ଯେ ତୁମେ କୁହ, ମୁଁ ବୁଝିପାରେନା । ରହିଯିବି ? ହାତରେ କାଣିକଉଡ଼ିଟାଏ ନାହିଁ, ଏଠି ରହିଯାଇ କ'ଣ କରିବି ଶୁଣେ ? ଆମେରିକା ଚାଲିଯାଇ ନୂଆ କରି ଜୀବନ ଗଢ଼ିବାହିଁ ମୋ ପକ୍ଷରେ ମଙ୍ଗଳ ହେବ ।''

ତଥାପି ଫରଫ୍ରେ ଅନୁରୋଧ କରି କହିଲେ, ''ଆସନ୍ତୁ, ଆପଣଙ୍କ ସେହି ପୁରୁଣା କୋଠିରେ ରହିଯିବେ । ଆପଣଙ୍କଲାଗି ଗୋଟିଏ ଖଞ୍ଜା ପୃଥକ୍ କରିଦେବି । ମୋର ବିଶ୍ୱାସ, ମୋ ଭାର୍ଯ୍ୟା ସେଥିରେ କୌଣସି ଆପତ୍ତି କରିବେ ନାହିଁ । କିଛି ଗୋଟାଏ ଧନ୍ଦା ସ୍ଥିର ନକରିବା ପର୍ଯ୍ୟନ୍ତ ଆରାମରେ ରହିପାରିବେ ।''

ହେଞ୍ଚାର୍ଡ଼ ବିସ୍ମିତ ହୋଇ ଫର୍‌ଫ୍ରେଙ୍କ ମୁହଁକୁ ଚାହିଁରହିଲେ । ସତରେ କ'ଣ ଫର୍‌ଫ୍ରେର ହୃଦୟଟା ଏତେ ସରଳ ? ସେ କ'ଣ ତାଙ୍କୁ ସତରେ ସନ୍ଦେହ କରେନା ? ସେ ଶେଷରେ ଟିକିଏ ହସିଦେଇ କହିଲେ, ''ଅଶେଷ ଧନ୍ୟବାଦ । କିନ୍ତୁ ଡୋନାଲ୍‌ଡ, ମୁଁ ଏ ପ୍ରସ୍ତାବ ରଖିପାରୁନାହିଁ ।''

କଥାଭାଷା କରି କରି ଦିହେଁ ଆସି ବେପାରୀ ସାହି ପାଖରେ ପହଞ୍ଚି ଗଲେ । ସାହିରେ ପଶୁ ପଶୁ ଫର୍‌ଫ୍ରେ କହିଲେ, ''ଆସନ୍ତୁ, ଆଜି ରାତିଟା ଆମ ଘରେ ଖାଇପିଇ ଯିବେ । ଆପଣ ତ ଜାଣିଥିବେ, ମୁଁ ଆପଣଙ୍କର ସବୁ ଆସବାବପତ୍ର କିଣିନେଇଛି । ଯଦି ଆପଣ ଚାହାନ୍ତି, ତେବେ ସେଥିରୁ ଯେଉଁଗୁଡ଼ିକ ଇଚ୍ଛା ସେଗୁଡ଼ିକ ନେଇ ବ୍ୟବହାର କରିପାରନ୍ତି ।''

ହେଞ୍ଚାର୍ଡ଼ କହିଲେ, ''କ'ଣ ହେଲା, ସେମିତି ମାଗଣା ଦେଇଦେବ ? ପଇସା ଦେଇ କିଣିଛ ଟି ?

''କିଣିଛି ସତ; କିନ୍ତୁ ସେଗୁଡ଼ାକ ଆପଣ କରାଇଥିଲେ; ସେ ସବୁର ମୂଲ୍ୟ ମୋ ଅପେକ୍ଷା ଆପଣଙ୍କ ପାଖରେ ଯଥେଷ୍ଟ ବେଶି ।''

ହେଞ୍ଚାର୍ଡ଼ ଭାବାବେଗରେ ଅସ୍ଥିର ହୋଇ କହିପକାଇଲେ, ''ସତରେ ଡୋନାଲ୍‌ଡ, ମୁଁ ବେଳେ ବେଳେ ଭାବେ, ତୁମକୁ ମୁଁ ଭୁଲ ବୁଝିଥିଲି ।'' ନିଜର ଦୁର୍ବଳତା ପ୍ରକାଶ କରିଦେଇ ସେ ଲଜ୍ଜିତ ହୋଇଉଠିଲେ ଏବଂ ତରତରରେ ଫର୍‌ଫ୍ରେଙ୍କର କରମର୍ଦ୍ଦନ କରି ସେଠାରୁ ପଳାଇଗଲେ । ଫର୍‌ଫ୍ରେଙ୍କ କଥା ଭାବି ଭାବି ଘରେ ଆସି ପହଞ୍ଚିବାବେଳକୁ ତାଙ୍କ ମନଟା ନରମ ହୋଇସାରିଥିଲା । ଘରେ ବସି ସେ ଭାବିଲେ ସମସ୍ତେ ତାଙ୍କର ଶତ୍ରୁ ନୁହନ୍ତି; ସମସ୍ତେ ବୋଧହୁଏ ତାଙ୍କର ଅମଙ୍ଗଳ ଚାହାନ୍ତିନାହିଁ । ଆମେରିକା ଚାଲିଯିବାଲାଗି ସେ ଯେଉଁ ପ୍ରସ୍ତାବ କରୁଥିଲେ, ତାହା ବନ୍ଦ କରିଦେଲେ । ଭାବିଲେ, ସଙ୍କୋଚ କାମ କରି ପେଟ ପୋଷିବାରେ ଲଜ୍ଜାର ସ୍ଥାନନାହିଁ ।

କିଛି ଦିନ ପରେ ସେ ଫର୍‌ଫ୍ରେଙ୍କ ଗୋଦାମକୁ ଯାଇ କହିଲେ, ଗୋଦାମରେ କିଛି କାମ ମିଳିଲେ ସେ ଆଗ୍ରହରେ କରନ୍ତେ । ସଙ୍ଗେ ସଙ୍ଗେ ଫର୍‌ଫ୍ରେ ତାଙ୍କୁ

ଖଣ୍ଡେ କାମ ଧରାଇଦେଲେ । ଅତୀତର ଧନୀ ମହାଜନ ଓ ମେୟର୍ ମାଇକେଲ୍ ହେଞ୍ଚାର୍ଡ଼ ଏଥର ସାଧାରଣ କୁଲି ମଜୁରିଆଙ୍କ ସହିତ ଜଣେ ହୋଇ କାମକୁ ବାହାରିପଡ଼ିଲେ; କାମ କଲେ ଯାଇ ସେହି ଗୋଦାମରେ; ଯାହାର ପ୍ରତ୍ୟେକଟି ଅଂଶ ଦିନେ ତାଙ୍କରି ମାଲିକାନାର ଅନ୍ତର୍ଭୁକ୍ତ ଥିଲା । ଦେଖିଲେ, ସେ ଯେଉଁ ଅଫିସ୍‌ରେ ବସି ହୁକୁମ୍ ଦେଉଥିଲେ ସେଠାରେ ବର୍ତ୍ତମାନ ବସିଛନ୍ତି ଫର୍‌ଫ୍ରେ; ତାଙ୍କରି ସବୁଜ ସୁନ୍ଦର ଉଦ୍ୟାନ ଭିତରେ ଲୁସେଟା ଆଜି ବିହାର କରୁଛି ଡୋନାଲ୍‌ଡ ଫର୍‌ଫ୍ରେ ସହିତ !

ସେବର୍ଷ ଶୀତଋତୁ ଆରମ୍ଭରେ କାଷ୍ଟରବ୍ରିଜ୍‌ର ଚାରିଆଡ଼େ ଶୁଣାଗଲା, ''ଏବର୍ଷ ଫର୍‌ଫ୍ରେ ସାହେବ ନିଶ୍ଚୟ ମେୟର ହୋଇଯିବେ ।'' କଥାଟା କିନ୍ତୁ ହେଞ୍ଚାର୍ଡ଼ଙ୍କ ପସନ୍ଦକୁ ଆସିଲାନାହିଁ । ସେ ମନେ ମନେ କହିଦେଲେ, ''ତା ବୟସର ଗୋଟାଏ ଟୋକା; ସେ ଫେର୍ ମେୟର ହୋଇଯିବ !! କ'ଣ ଘଟି ନଗଲା ସତେ ! ମୁଁ ମାଲିକ ଥିଲି, ଚାକର ହୋଇଗଲି; ସେ ଚାକର ଥିଲା, ମାଲିକ ହୋଇଗଲା ! ଯେଉଁ ସ୍ତ୍ରୀଟା ମୋ ଭାର୍ଯ୍ୟା ହୋଇଥାନ୍ତା, ସେ ଆଜି ତା ଭାର୍ଯ୍ୟା ହୋଇଗଲା !''

ଏହି କଥା ପ୍ରତିଦିନ ସେ ବାରମ୍ବାର ମନେ ମନେ କହିହେଲେ । ଲୋକଙ୍କ ସହିତ ଆଉ ବିଶେଷ କଥାଭାଷା କଲେନାହିଁ, ସବୁବେଳେ ମୁହଁ ଫୁଲେଇ ରହିଲେ । ଦିନେ ଲୋକେ ଶୁଣିଲେ ସେ କହୁଛନ୍ତି, ''ଆଉ ପନ୍ଦରଟା ଦିନ ରହିଲା ।'' ତା'ର ଦୁଇ ଚାରି ଦିନ ପରେ ସେ କହିବାର ଶୁଣାଗଲା, ''ଆଉ ଦିନ ବାରଟା ।''– ଦିନକୁ ଦିନ ସଂଖ୍ୟା କମାଇ ସେ ମନେ ମନେ କିଛି ଗୋଟାଏ ହିସାବ କରୁଥିବା ପରି ମନେହେଲା । ତାଙ୍କ ସହିତ କାମ କରୁଥିବା ଜଣେ ଲୋକ ସେଦିନ ପଚାରିଲା, ''ଆଉ ଦିନ ବାରଟା କ'ଣ କି ?''

ସେ କହିଲେ, ''ଆରେ ମୁଁ ଗୋଟାଏ ଶପଥ କରିଥିଲି, ଆଉ ବାର ଦିନ ପରେ ଶପଥ ପୂରିଯିବ ।''

''କି ଶପଥ କରିଥିଲ ?''

''ଶପଥ କରିଥିଲି ଏକୋଇଶି ବର୍ଷ ଯାଏ ନିଶାପାଣି ଛୁଇଁବିନାହିଁ । ଆଉ ବାର ଦିନ ପରେ ଏକୋଇଶି ବର୍ଷ ପୂରିଯିବ । ମୁଁ ଟିକିଏ ମଦ ପିଇ ଫୁର୍ତ୍ତି କରିବି ।''

କିଛି ଦିନ ପରର କଥା । ଝରକା ପାଖରେ ବସି ଏଲିଜାବେଥ୍ ବହି ପଢୁଥାଏ, ଶୁଣିଲା ରାସ୍ତାରେ ଲୋକେ କୁହାକୁହି ହେଉଛନ୍ତି, ''ହେଞ୍ଚାର୍ଡ଼ ବୁଢ଼ା

ଏକୋଇଶି ବର୍ଷ ହେଲା ମଦ ପିଉନଥିଲା । ଆଜି ତା ଶପଥ ପୂରିଯାଉଛି; ଆଜିଠୁ ପୁଣି ନିଶା ଖାଇବ ।''

ଏକଥା ଶୁଣି ଏଲିଜାବେଥ୍ ଚମକିପଡ଼ିଲା । ତରତର ହୋଇ ବାହାରିପଡ଼ିଲା ବାପାଙ୍କୁ ଭେଟିବା ଲାଗି ।

## ବାର

ଏକୋଇଶି ବର୍ଷର ଶପଥ ପୂରିଯିବା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ଜଣେଇ ଶୁଣେଇ ମଦ ପିଇବାଲାଗି ହେଞ୍ଚାର୍ଡ଼ ଥ୍ରି-ମାରିନର୍ସ ହୋଟେଲ ଭିତରେ ପଶିଯାଇଥିଲେ । ଏଲିଜାବେଥ୍ ଯାଇ ସେଠାରେ ପହଞ୍ଚିବା ବେଳକୁ ସେ ମଦ ପିଇ ମାତାଲ । ମାତାଲ ଅବସ୍ଥାରେ ସେ ଫର୍‌ଫ୍ରେଙ୍କ ବିରୁଦ୍ଧରେ ବକାବକି କରୁଛନ୍ତି ଦେଖି ଲଜ୍ଜା ଓ ଅପମାନରେ ଏଲିଜାବେଥ୍‌ର ମୁଣ୍ଡ ପୋତି ହୋଇଗଲା । ବିଚାରୀ ଯାଇ ତାଙ୍କ ଗୋଡ଼ହାତ ଧରି ବାର-ନେହୁରା ହେବା ପରେ ସେ ଚୁପ୍‌ହୋଇ ହୋଟେଲରୁ ବାହାରି ଆସିଲେ ସତ; କିନ୍ତୁ ଘରେ ପହଞ୍ଚି ସେ ଫର୍‌ଫ୍ରେଙ୍କ ଉଦ୍ଦେଶ୍ୟରେ ଧମକ-ଚମକ ଦେବା ଆରମ୍ଭ କରିଦେଲେ ।

ଏଲିଜାବେଥ୍ ଦେଖିଲା, ଇଏ ନିଶାଖୋର ଲୋକ, କେତେବେଳେ କ'ଣ କରିବସିବେ ଠିକ୍‌ନାହିଁ; ଯାଇ ଫର୍‌ଫ୍ରେଙ୍କୁ ସତର୍କ କରାଇଦେଇ ଆସିବା ଭଲ ହେବ । ପରେ ଭାବିଲା, ନିଜେ ସବୁବେଳେ ବାପାଙ୍କ ପାଖେ ପାଖେ ରହିଲେ ସବୁଠାରୁ ମଙ୍ଗଳ ହେବ । ମନ କଥା ମନରେ ରଖି ସେ ଯାଇ ଫର୍‌ଫ୍ରେଙ୍କୁ କହିଲା, ''ଯଦି ଗୋଦାମରେ ଖଣ୍ଡେ କାମ ଦିଅନ୍ତେ, ତେବେ ସେ ବଡ଼ ଉପକୃତ ହୁଅନ୍ତା ।'' ଗହମ ବଛାବଛି କରିବାରେ ଯେଉଁ ସ୍ତ୍ରୀଲୋକମାନେ ଗୋଦାମରେ କାମ କରୁଥିଲେ, ସେମାନଙ୍କ କାମ ତଦାରଖ କରିବା ଲାଗି ଫର୍‌ଫ୍ରେ ତାଙ୍କୁ ନିଯୁକ୍ତ କରିଦେଲେ । ଏ ସୁଯୋଗ ପାଇ ଏଲିଜାବେଥ୍ ବରାବର ହେଞ୍ଚାର୍ଡ଼ଙ୍କ ଉପରେ ନଜର ରଖି ଚାଲିଲା । ସନ୍ଧ୍ୟା ପାଞ୍ଚଟା ବାଜିଯିବାମାତ୍ରେ ସେ ତାଙ୍କପାଇଁ ଚାହା ନେଇଯାଏ । ପ୍ରତି ମୁହୂର୍ତ୍ତରେ ସେ ତାଙ୍କର ହେପାଜତ ନେବା ଫଳରେ ପ୍ରଥମେ ପ୍ରଥମେ ହେଞ୍ଚାର୍ଡ଼ ଟିକିଏ ବିରକ୍ତ ଓ ବିସ୍ମିତ ହେଉଥିଲେ; କିନ୍ତୁ ତା'ର କୋମଳ ବ୍ୟବହାର ଶେଷରେ ତାଙ୍କର ହୃଦୟ ଜୟ କରିନେଲା । ଧୀରେ ଧୀରେ ସେ ତା' ଉପରେ ନିର୍ଭର କରି ଚଳିବାକୁ ଲାଗିଲେ; ଏଥର ଆଉ ଲୁସେଟା କଥା

ବିଶେଷ ମନେପଡ଼ିଲା ନାହିଁ । ଏଲିଜାବେଥ୍ ପ୍ରତି ଗୋଟାଏ ସ୍ନେହ-ମମତାରେ ହେଞ୍ଚାର୍ଡ଼ଙ୍କର ହୃଦୟ ପୂର୍ଣ୍ଣ ହୋଇଗଲା ।

ଲୁସେଟା ବର୍ତ୍ତମାନ ଧନୀ ମହାଜନ ଡୋନାଲ୍ଡ଼ ଫରଫ୍ରେଙ୍କ ସ୍ତ୍ରୀ । ସେ ଆଉ ବିଶେଷ ବାହାରକୁ ବୁଲି ବାହାରନ୍ତିନାହିଁ; ବିଶେଷତଃ ଗୋଦାମ ଖୁଆଡ଼ରେ ହେଞ୍ଚାର୍ଡ଼ ଅଛନ୍ତି ଜାଣିଲେ ସେ ପାଖ ମାଡ଼ନ୍ତିନାହିଁ । ଫଳରେ ହେଞ୍ଚାର୍ଡ଼ ଆଉ ତାଙ୍କୁ ଦେଖିବାକୁ ପାଇଲେନାହିଁ । ଏ ଅବସ୍ଥାରେ ଯଦି ଆହୁରି କେତେଟା ମାସ ଚାଲିଥାଆନ୍ତା, ହେଞ୍ଚାର୍ଡ଼ଙ୍କର କ୍ରୋଧାଗ୍ନି ଅବା ଲିଭି ପାଉଁଶ ହୋଇଯାଇଥାନ୍ତା; ଅତୀତକୁ ଭୁଲି, ଲୁସେଟାଙ୍କୁ କ୍ଷମା ଦେଇ ସେ ଅବା ଟିକିଏ ଶାନ୍ତି ପାଇପାରିଥାନ୍ତେ । କାଷ୍ଟରବ୍ରିଜ୍‌ର ଲୋକେ ସେ ଅତୀତ କଳଙ୍କ ବିଷୟରେ ବିଶେଷ କିଛି ଶୁଣିବାକୁ ପାଆନ୍ତେନାହିଁ; କିନ୍ତୁ ମାସ ଛଅଟା ଯାଇଛି କି ନାହିଁ, ସେ ଯେଉଁ ଦୁର୍ଭାଗ୍ୟଜନକ ଘଟଣା ଘଟିଗଲା, ତା'ଫଳରେ ଏ ସମସ୍ତ ସମ୍ଭାବନା ଏକାବେଳକେ ମାଟିରେ ମିଶିଗଲା ।

ବସନ୍ତ ଋତୁ । ବଜାରରୁ କ'ଣ ଦୁଇଟା କିଣାକିଣି କରି ଲୁସେଟା ଘରକୁ ଫେରୁଛନ୍ତି, ଦେଖିଲେ ତାଙ୍କ ଫାଟକ ପାଖରେ କେହି ଜଣେ ଲୋକ ଅପେକ୍ଷା କରି ଠିଆହୋଇଛି । ସେ ଫାଟକ ଖୋଲି ଭିତରକୁ ପଶିଯିବା ସଙ୍ଗେ ସଙ୍ଗେ ସେ ଲୋକଟା ତାଙ୍କୁ କ'ଣ କହିବାଲାଗି ପାଖକୁ ଚାଲିଆସିଲା । ଲୁସେଟାଙ୍କର ମନେହେଲା, ଲୋକଟାକୁ ସେ ପୂର୍ବରୁ କେଉଁଠି ଦେଖିଛନ୍ତି– ଅବଶ୍ୟ ଏ କାଷ୍ଟରବ୍ରିଜ୍‌ର ନୁହେଁ । ଲୋକଟାର ମୁହଁଟା ବଡ଼ ରୁକ୍ଷ କର୍କଶ ଦେଖାଯାଉଥାଏ; କିନ୍ତୁ ସେ ନମ୍ରତା ପ୍ରକାଶ କରି କହିଲା, ''ଆଜ୍ଞା, ମୁଁ ଜଣେ ଚାକିରିପ୍ରାର୍ଥୀ; ଆପଣଙ୍କ ଏ ପାଖର ଜଣେ ଗହମ ବ୍ୟବସାୟୀ ଗୋଟିଏ ମେନେଜର ଖୋଜୁଛନ୍ତି, ଭାବୁଛି ମୁଁ ଦରଖାସ୍ତ କରିବି । ସେ କାଳେ ଆପଣଙ୍କ ସାହେବଙ୍କର ବନ୍ଧୁ । ତେଣୁ ଆପଣ ସାହେବଙ୍କୁ ଟିକିଏ ସୁପାରିସ କରିଦେଲେ ମୋତେ ନିଶ୍ଚୟ ଚାକିରିଟା ମିଳିଯାଆନ୍ତା, ମୁଁ ଚିରଦିନଲାଗି କୃତଜ୍ଞ ରହନ୍ତି, ଆଜ୍ଞା !''

ତା' କଥାରେ ଆଗ୍ରହ ନଦେଖାଇ ଲୁସେଟା କହିଲେ, ''ମୁଁ ସେସବୁ ଜାଣେନା; ସେ ଏବେ ସୁପାରିସ କରିବେ କି ନାହିଁ, ମୁଁ କିପରି କହିବି ?''

ଲୋକଟା କହିଲା, ''ଆଜ୍ଞା, ଆପଣ ଦୁଇପଦ କହିଦେଲେ ସବୁ ହୋଇଯିବ । ମୁଁ ଆପଣଙ୍କୁ ଅନେକଦିନୁ ଜାଣେ, ମୋ ଘର ପରା ଜେରେସୀରେ; ଆପଣ କ'ଣ ମୋତେ ଚିହ୍ନିନାହାନ୍ତି ? ମୋ ନାଁ ପରା ଜଅପ୍ ।''

ଢେରେସୀ ନାଆଁଟା ଶୁଣୁ ଶୁଣୁ ଲୁସେଟା ଆତଙ୍କରେ ଥରିଉଠିଲେ । କିନ୍ତୁ ଏ ଜଅପ୍ ଲୋକଟା ଯେ କିଏସେ ? ସେ ଯେ କେବେ ତାକୁ ଢେରେସୀରେ ଦେଖିଥିଲେ ସେକଥା ତାଙ୍କର ମୋଟେ ମନେପଡ଼ିଲାନାହିଁ । ଅହଂକାରରେ ମୁହଁ ଫୁଲାଇ ଆଉ କିଛି ନପଚାରି ସେ ଦରଦହୀନ ଭାଷାରେ କହିଦେଲେ, ''ହୋଇଥିବ, ମୋର କାହିଁକି ମନେପଡୁନି ।''

ଲୋକଟା କହିଲା, ''ଆପଣ ଖାଲି ତୁଣ୍ଡ ସାରି ଫର୍‌ଫ୍ରେ ସାହେବଙ୍କୁ ମୋ ବିଷୟରେ ପଦଟାଏ କହିଦେଲେ, ମୋ ଚକିରିଟା ହୋଇଯାଆନ୍ତା ।''

କିନ୍ତୁ ଏଭଳି କାମରେ କୌଣସି ପ୍ରକାର ସାହାଯ୍ୟ କରିପାରିବେନାହିଁ ବୋଲି ଗୋଟାଏ ରୋକ୍‌ଠୋକ୍ ଜବାବ ଦେଇ ଲୁସେଟା ଫାଟକ ବନ୍ଦ କରି ଭିତରକୁ ଚାଲିଗଲେ । ଲୁସେଟାଙ୍କ ଦ୍ୱାର ଉପରେ ଗୋଟାଏ କୁଟିଳ ଦୃଷ୍ଟିପାତ କରି ଲୋକଟା ରାଗଫଣଫଣ ହୋଇ ଶୁଣାଇଦେଲା, ''ରହିଥା ଲୋ ବାବୁଆଣୀ, ମୁଁ ଅଲବତ୍ ଗୋଟାଏ ପ୍ରତିଶୋଧ ନନେଇଛି ତ ମୋ ନାଆଁ ଜଅପ୍ ନୁହେଁ ।'' ତା'ପରେ ମନର ରାଗକୁ ଖୋରାକ ଯୋଗାଇବାଲାଗି ସେ ଯାଇ, 'ପିଟର୍ସ ପିଙ୍ଗର୍' ହୋଟେଲରେ ପଶିଗଲା ।

ପିଟର୍ସ ପିଙ୍ଗର୍ ହୋଟେଲଟା ହେଲା ମଦୁଆ ବଜାରିଆଙ୍କ ଅସଲ ଆଡ୍‌ଡା । କିଙ୍‌ସ ଆର୍ମସ୍ ଓ ଥ୍ରୀ ମାରିନର୍ସ ହୋଟେଲକୁ ବି ମଦୁଆ ଆସନ୍ତି; କିନ୍ତୁ ସେମାନେ ସବୁ ହେଲେ ଧନୀ ମାନୀ, ଉପର ଶ୍ରେଣୀର ଲୋକ । କିନ୍ତୁ ପିଟର୍ସ ପିଙ୍ଗର୍ ହୋଟେଲରେ ଜମନ୍ତି ଗାଉଁଲିଆ ବଜାରିଆ ପ୍ରଭୃତି ନୀଚଶ୍ରେଣୀର ମଦୁଆ । ଜଅପ୍ ଯାଇ ପହଞ୍ଚିବାବେଳକୁ ହୋଟେଲଟା ଲୋକରେ ଭରପୂର । ମରଦ ମାଇପି, ଟୋକା ବୁଢ଼ା, ଛୋଟା କେମା ହୋଇ ନାନା କିସମର ମଦୁଆଙ୍କ ପାଟିତୁଣ୍ଡରେ ହୋଟେଲ ଭିତରଟା କମ୍ପୁଥାଏ । ସେହି ଯେଉଁ ସିମେଇ ଖିରିବାଲୀ ବୁଢ଼ୀ, ସେ ତା'ର ଗପପେଡ଼ି ମେଲିଦେଇ ହେଞ୍ଚାର୍ଡ଼ଙ୍କ ମଦପିଆ ଘଟଣା ଗପି ଚାଲିଥାଏ; ତାକୁ କେନ୍ଦ୍ର କରି ଅନ୍ୟମାନେ ବସିଯାଇଥାନ୍ତି । ବିଦ୍ରୁପ, ଆକ୍ଷେପ; ଥଟ୍ଟା-ତାମସା ଭିତରେ ନିଶାଟା ବେଶ୍ ଜମିଥାଏ । ଜଅପ୍ ଦେଖିଲା ଲୁସେଟା ଉପରେ ରାଗ ଶୁଝେଇବାଲାଗି ଏ ଗୋଟାଏ ସୁବର୍ଣ୍ଣ ସୁଯୋଗ । ଗପର ଖିଅ ଧରି ସେ ଯୋଡ଼ିଦେଲା, ''ଆହେ ମାଉସୀ, ସେ ବାବୁଙ୍କ ବିଷୟରେ ତମେ ସିନା ଏତିକି ଜାଣିଛ; ମୁଁ ତ ଆହୁରି କେତେ କଅଣ ଜାଣିଛି । ଗୋଟାଏ ମାଇପିପାଲରେ ପଡ଼ି ସେ ଯେଉଁ... ଆହା ହା କ'ଣ କହିବି ସେଗୁଡ଼ା ଆଉ ।''

ସମସ୍ତଙ୍କର ନଜର ଯାଇ ଜଅପ୍ ଉପରେ ଠୁଳ ହୋଇଗଲା । ବୁଢ଼ୀ କହିଲା, ''ଆହେ ବାବୁ, କଥାଟାକୁ ଖୋଲି କହୁନା ।''

ଜଅପ୍ କହିଲା, ''ଆହେ, ତାଙ୍କ ସାଙ୍ଗରେ ଭାବ ପୀରତି କରି, ସ୍ୱାମୀସ୍ତିରୀ ଭଳି ବରଷ ବରଷ କଟେଇ ଶେଷରେ ତାଙ୍କୁ ଗୋଡ଼ରେ ଆଡ଼େଇଦେଇ ଆଉ ଜଣଙ୍କୁ ବାହା ହୋଇ ପଳେଇଥିବା ଜଣେ ମାଇପି କଥା କହୁଥିଲି । ଏ ଆଖି କ'ଣ ନଦେଖିଛି !!''

ଖିରିବାଲୀ ବୁଢ଼ୀ ପଚାରିଲା, ''ଆଲୋ, ଏ ନୂଆବାବୁ, କାହା କଥା କହୁଛନ୍ତି ଯେ ?''

''ଆହେ, ଏମିତି ଛୋଟକାଟିଆ ଲୋକ ନୁହଁ ହେ; ତମର ଏଠିକା ସବୁଠାରୁ ବଡ଼ଲୋକଙ୍କ ଘର ଗୁମର ଇଏ ।''

''ଏଁ ! ଏଁ !! ଏଁ !!!''—ଏକସମୟରେ ଅନେକ ପାଟି ଶୁଭିଲା ।

ଜଅପ୍ କହିଲା, ''ହେଲେ ଏମିତି ବଡ଼ଲୋକିଆଣୀଗୁଡ଼ାକୁ ବିଚ୍ ବଜାରରେ ବେଇଜ୍ଜତ୍ କରେଇଦେବା କଥା । ମୁଁ ନିଜ ଆଖିରେ ଦେଖିଛି; ଏହି ହେଞ୍ଚାର୍ଡ଼ ସାହେବଙ୍କ ସହିତ ସେ ମାଇପିଟା କ'ଣ ହେଇ ଚଳୁନଥିଲା ।—ଆହେ, ଭାରିଯା ଆଉ କାହାକୁ କହନ୍ତି କି ? ଆଉ ଅବିକା ! ଅବିକା ହେଞ୍ଚାର୍ଡ଼ ସାହେବ ଦିବାଳୀ ହୋଇଗଲା ଦେଖି ତାହାପରା ଲୋକକୁ ଗୋଡ଼ରେ ଆଡ଼େଇଦେଇ ସେହି ସ୍ମଟିସ୍ ମହାଜନକୁ ବାହା ହୋଇଗଲା । ଏଇନା ବାବୁଆଣୀର ଆଡ଼ମ୍ବର କ'ଣ, ତେମେ ଆମେଙ୍କ ପରି ଗରିବ ବାପୁଡ଼ାଗୁଡ଼ା ତାଙ୍କ ଆଖିରେ ମଣିଷନୁହଁ ହେ । କଥାଟା ତମ ମନକୁ ପାଉଛି ମାଉସୀ ? ଆହେ କହୁନା ?''

ଜଣେ ବୁଢ଼ୀ ତା' ମଦ ଗିଲାସଟାକୁ ତଳେ ଥୋଇଦେଇ କହିଉଠିଲା, ''ଏଁ, ଏଁ ! ଫର୍‌ଫ୍ରେ ସାହେବଙ୍କ ସ୍ତିରୀଟି ? ଆହେ, ତାଙ୍କୁ ହେଞ୍ଚାର୍ଡ଼ ସାହେବ ଢେରେସୀରେ ରଖିଥିଲେ ! ଆଁ !! ଓହୋ, କି ଯୁଗ ନହେଲା ! କୋଉ କାନ ଏକଥା ପରତେଯିବ କହ ?''

''ଆଲୋ, ଗୋଟା ବୁଢ଼ାବୁଢ଼ୀ ସ୍କିମିଟି ନାଚପାଇଁ ବଢ଼ିଆ ମଉକା ମିଳିଗଲା,''—କହି ସିମେଇ ଖିରିବାଲୀ ବୁଢ଼ୀ ନାଚିଉଠିଲା ।

''ଠିକ୍ କହିଛ, ମାଉସୀ; ଆସି ମୁଁ ବୁଢ଼ା ହେଲିଣି, ହେଲେ ସ୍କିମିଟି ନାଚପାଇଁ ଏବଂ ଏମେତେ ମଉକା କେଭେ ମିଳିନଥିଲା । ବଢ଼ିଆ ନାଚଟେ ହେବ ।'' — ଆଉ ଜଣେ ମଦୁଆ ପାଳି ଧରିଲା ।

''ଆହେ, ''ସ୍କିମିଟି ନାଚ କ'ଣ ମ ?'' –ସେ ଅଞ୍ଚଳକୁ ନୂଆ ହୋଇ ଆସିଥିବା ଜଣେ ମଦୁଆ ପଚାରିବସିଲା ।

''ଆପଣ ତା'ହେଲେ ଏସବୁ ଜାଣିନାହାନ୍ତି, ନା ?'' କହି ହୋଟେଲ ମାଲିକିଆଣୀ ବୁଝାଇଦେଲା, ''ଜଣକର ସ୍ତ୍ରୀ ଯେତେବେଳେ ଆଉ ଜଣକ ଆଡ଼େ... ବୁଝୁନାହାନ୍ତି ? ସେତେବେଳେ ତାଙ୍କୁ ଅପମାନ ଦେବାଲାଗି ଆମ ଏଠିକା ଗାଉଁଲିଲୋକେ ଗୋଟାଏ ତାମସା କରନ୍ତି । କୁଟାପାଳ ବାନ୍ଧି ସେ ସ୍ତ୍ରୀ ଓ ସେ ପୁରୁଷଙ୍କ ପରି ଦେଖାଯାଉଥିବା ଦୁଇଟି ମୂର୍ତ୍ତି ଗଢ଼ାଯାଏ; ମୂର୍ତ୍ତି ଦୁଇଟାକୁ ଗଧ ବା ଖଚର ଉପରେ ବସାଇ ସାହି ସାହି ବୁଲାଯାଏ । ଏହି ଯେଉଁ ନାଚ-ତାମସା କରି ସେ ଲୋକଙ୍କୁ ଲୋକହସା କରାଯାଏ, ତା'ରି ନାଁ ସ୍କିମିଟି ନାଚ ।''

ପିଟର୍ସ ପିଙ୍ଗର୍ ହୋଟେଲରେ ମଦୁଆମାନେ ସ୍କିମିଟି ନାଚପାଇଁ ଯୋଜନା ପ୍ରସ୍ତୁତ କରିଦେଲେ । କିଛିଦିନ ପରର କଥା । ବଡ୍‌ମାଉଥ୍ ରୋଡ଼ରେ ଥିବା କୌଣସି ଏକ ଗାଆଁକୁ ଯିବାଲାଗି ଫର୍‌ଫ୍ରେ ବାହାରିଛନ୍ତି, ଏତିକିବେଳେ ଆବେଲ୍‌ହ୍ୱିଟିଲ୍ ଖଣ୍ଡେ ଜରୁରୀ ଚିଠି ଆଣି ପହଞ୍ଚାଇଦେଲା । ଫର୍‌ଫ୍ରେ ଚିଠି ଖୋଲି ଦେଖନ୍ତି ତ ତାହା ଏକ ବେନାମି ଚିଠି । ଲେଖାଥାଏ, 'ବଡ଼ ଜରୁରୀ କାମ ଅଛି, ଦୟାକରି ଆଜି ସନ୍ଧ୍ୟାକୁ ୱେଦରବରି ଗାଆଁକୁ ଆସିବେ ।' ଫର୍‌ଫ୍ରେଙ୍କର ସେ ଗାଆଁରେ ବି କିଛି କାମ ଥାଏ; ତେବେ ଏପରି କ'ଣ ଜରୁରୀ କାମ ପଡ଼ିଛି, ସେ ବୁଝିପାରିଲେନାହିଁ । ଯାହାହେଉ ସେ ଆଉ ବଡ୍‌ମାଉଥ୍ ରୋଡ଼ରେ ନଯାଇ ୱେଦରବରି ଗାଆଁକୁ ଚାଲିଲେ । ପାଖରେ ଆବେଲ୍ ଓ ହେଞ୍ଚାର୍ଡ଼ ଥାଆନ୍ତି । ସେମାନଙ୍କୁ ନିଜର ନୂତନ ଗନ୍ତବ୍ୟ ସ୍ଥଳର ନାମଟା କହିଦେଇ ସେ ବାହାରିପଡ଼ିଲେ ।

ଏ ଯେଉଁ ଚିଠିଟା କଥା କୁହାଗଲା, ସେଇଟି ଫର୍‌ଫ୍ରେଙ୍କର କେତେ ଜଣ ଗୁମାସ୍ତା ମିଶି ଜାଣିଶୁଣି ଲେଖିଥିଲେ । ସେମାନେ ଶୁଣିସାରିଥାନ୍ତି ଯେ ସେଦିନ ରାତିରେ ସ୍କିମିଟ ନାଚ ବାହାରିବ । ତେଣୁ ଅନ୍ତତଃ ସନ୍ଧ୍ୟାବେଳଟା ଫର୍‌ଫ୍ରେଙ୍କୁ ନିଜ ଘରୁ ଦୂରକୁ ପଠାଇଦେଇ ତାଙ୍କୁ ଲଜ୍ଜା ଓ ଅପମାନରୁ ରକ୍ଷା କରିବାଲାଗି ସେମାନେ ଏପରି ଏକ ମିଛ ଚିଠି ପଠାଇଦେଇଥିଲେ; କିନ୍ତୁ ସେମାନେ ଲୁସେଟାଙ୍କୁ ଅପମାନରୁ ରକ୍ଷା କରିବା ଲାଗି କୌଣସି ଚେଷ୍ଟା କଲେନାହିଁ । କାରଣ ସେମାନେ ଜାଣିଥିଲେ ଯେ ଲୁସେଟା ପ୍ରକୃତ ଦୋଷୀ; ତେଣୁ ତାଙ୍କୁ ଦଣ୍ଡ ମିଳିବା ଉଚିତ ହେବ । ଅବଶ୍ୟ ସେମାନେ କେହି ଜାଣିନଥିଲେ ଯେ ବିଚାରୀ ଲୁସେଟା ଅନ୍ତଃସତ୍ତ୍ୱା, ଆଉ

ମାସ ଛଅଟାରେ ସନ୍ତାନ ପ୍ରସ୍ତବ କରିବେ । ଜାଣିଥିଲେ ହୁଏତ ସେମାନଙ୍କର ମନରେ ଦୟା ଆସିଥାନ୍ତା । ସେଦିନ ସନ୍ଧ୍ୟା ଆଠଟା ବେଳ କଥା । ବୈଠକଖାନାରେ ଏକାକୀ ବସି ଲୁସେଟା କ'ଣ ସବୁ ଭାବୁଛନ୍ତି, ଏହି ସମୟରେ ଦୂରରେ ଲୋକ କୋଳାହଳ ଶୁଣାଗଲା । କ'ଣ ଏପରି ପାଟିତୁଣ୍ଡ ଶୁଭୁଛି ଭାବି ସେ ତେଣେ କାନ ଦେଇନଥିଲେ । କିନ୍ତୁ ସାମନା ଘରର ଜଣେ ଚାକର ତା' ପଡ଼ିଶାଘରର ଉପର ମହଲାରେ ବସିଥିବା ଅନ୍ୟ ଜଣେ ଚାକର ସହିତ ଯେପରି ବଡ଼ପାଟିରେ କଥାଭାଷା ଆରମ୍ଭ କରିଦେଲା, ସେଥିରେ ଲୁସେଟା ବିଚଳିତ ହୋଇଉଠିଲେ । ତଳ ଚାକରଟା ଉପର ଚାକରକୁ ପଚାରିଲା, ''ଭାଇ, ସେ କିମିତି ନାଚବାଲା ଏପଟକୁ ଆସୁଛନ୍ତି କିରେ ? ଏଠିକି କିଛି ଦେଖାଯାଉନାହିଁ ମ !''

ଆର ଚାକରଟା ଜଣାଇଲା, ''ଆରେ ହଁ, ହଁ; ଆମରି ବେପାରିସାହି ଆଡ଼କୁ ମୁହାଁଇଛନ୍ତି । ବାଃ, ବା ରେ ! ମୂର୍ତ୍ତି ଦିଇଟା ପିଠିକି ପିଠି ଲଗାଇ ଗଧ ଉପରେ ବସିଛନ୍ତି ।''

''ଇରେ ହେ, କ'ଣ ଦି'ଟା ମୂର୍ତ୍ତି କି ରେ ?''

ଆର ଜଣକ ଶୁଣାଇଦେଲା, ''ହଁ, ହଁ; ଦିଇଟାରେ; ହେଇ ଆସିଗଲା ଆମ ସାହିକି । ବାଃ, ବାଃ, ମରଦଟା ମୁହଁ କରିଛି ପଛକୁ, ମାଇପିଟା ମୁହଁ କରିଛି ଆଗକୁ । ରୁଷାରୁଷି ହୋଇଛନ୍ତି କି କ'ଣ ! ଇରେ ହେ, ଏଣେ ଯା କହୁଣିକି ତା' କହୁଣି ବନ୍ଧା ହେଇଛି ରେ !''

ଏପଟ ଚାକର ପଚାରିଲା, ''ଆରେ, କାହା ଭଳି ହୋଇଛନ୍ତି କହ; ନା ଖାଲି ଏମିତି ମ ?''

''ଏଁ, କାହା ଭଳି ଗୋଟାଏ ହୋଇଥିବେ କି । ମରଦଟାର ମୁଣ୍ଡବାଳ କଳା, ମୁହଁଟା ନାଲି, ଆଉ ମାଇପିଟା ତ ଠିକ୍..., କାହାପରି କହିଲୁ ? ଠିକ୍ ସେ ଆଗଘର ମାଲିକାଣୀଙ୍କ ପରି ହେଇଛି ବେ । ...ଆରେ, ଠିକ୍ ତାଙ୍କ ଚର୍ଚ୍ଚ ଯିବା ବେଶଟା ବେ; ଗାଢ଼ନାଲି କୋଟକୁ ମୁଣ୍ଡରେ ପକ୍ଷୀପରଖଞ୍ଜା କାଳିର ଟୋପି ।''

ସେ ବର୍ଣ୍ଣନା ଶୁଣି ଲୁସେଟା ଚମକିପଡ଼ିଲେ— ଏଁ, ଲୋକଟା ତ ଠିକ୍ ମୋରି ଚର୍ଚ୍ଚ ଯିବା ବେଶ ବର୍ଣ୍ଣନା କରିଗଲା !! ସେତିକିବେଳେ ବୈଠକଖାନା ଭିତରକୁ ଏଲିଜାବେଥ୍ ଜେନ୍ ପଶିଆସି କହିଲେ, ''ଆପଣଙ୍କୁ ଟିକିଏ ଦେଖା କରିବା ଲାଗି ଚାଲିଆସିଲି । ଏ କ'ଣ ! ଝରକାଟା ଖୋଲାରଖିଛନ୍ତି ?

ପରଦାଗୁଡ଼ାକ ପକାଇନାହାନ୍ତି ?'' ଲୁସେଟାଙ୍କ ଉତ୍ତରକୁ ଅପେକ୍ଷା ନକରି ସେ ତରତର ହୋଇ ଝରକାର ପରଦା ପକାଇଦେଲା; କିନ୍ତୁ ତା'ର ଉଦ୍ଦେଶ୍ୟ ବୁଝିପାରି କି କ'ଣ, ଲୁସେଟା ଯାଇ ପରଦା ଖୋଲି ଦେଉ ଦେଉ ବେଦନାଭରା କଣ୍ଠରେ କହିଲେ, ''ଥାଉ ଥାଉ, କାହିଁକି ବୃଥାଟାରେ ପରଦାଟା ପକାଉଛ !''

ତାଙ୍କ କଥାରେ କାନ ନଦେଇ ଏଲିଜାବେଥ୍ ଯାଇ ଝରଟା ବନ୍ଦ କରିଦେବାକୁ ବସିଲା; କିନ୍ତୁ ତା' କାମରେ ବାଧା ଦେଇ ଲୁସେଟା କହିଲେ, ''ଆଉ ଯେତେ ଲୁଚାଇଲେ ବି ଲୁଚିବନାହିଁ, ଏଲିଜାବେଥ୍ ! ମୋତେ ଲୋକହସା କରାଇବାଲାଗି ଲୋକେ ଯେତେବେଳେ ସ୍କିମିଟି ନାଚ ବାହାର କରିଛନ୍ତି... ।'' କହୁ କହୁ ତାଙ୍କର ମୁହଁ ବିବର୍ଣ୍ଣ ହୋଇଗଲା । ଲୁହଛଳଛଳ ଆଖିରେ ସେ କହିଲେ, ''ତୁମେ କ'ଣ ଜାଣିନା, ଏଲିଜାବେଥ୍ ? —ତାଙ୍କର ଓ ମୋର ମୂର୍ତ୍ତି ଗଢ଼ି ଲୋକେ ସ୍କିମିଟି ନାଚ ବାହାର କରିଛନ୍ତି ।''

ଏଲିଜାବେଥ୍ ମୁହଁରୁ ଜଣାପଡ଼ିଗଲା ଯେ ସେ ଏସବୁ ଜାଣେ । ସେତେବେଳକୁ ସ୍କିମିଟି ନାଚବାଲାଏ ଫର୍‌ଫ୍ରେଙ୍କ ଘର ପାଖାପାଖି ହୋଇଗଲେଣି । ଲୁସେଟା ଅଧିକରୁ ଅଧିକ ବିମର୍ଷ ହୋଇ ଝାଉଁଳି ପଡୁଛନ୍ତି ଦେଖି ଏଲିଜାବେଥ୍ ଅନୁନୟ କରି କହିଲା, ''ଛି, ଏଗୁଡ଼ା ଦେଖିବା କଥା ନୁହେଁ; ଝରକାଟା ବନ୍ଦ କରିଦିଏ ।''

କାନ୍ଦ କାନ୍ଦ ହୋଇ ଲୁସେଟା କହିଲେ, ''ପୋଡ଼ିଗଲା ତିଅଣରେ ଆଉ କି ସୁଆଦ ଥାଏ, ଏଲିଜାବେଥ୍ ! ମୁଁ ସିନା ଝରକା ବନ୍ଦ କରିଦେବି, ହେଲେ ସେ କ'ଣ ଆଖି ବୁଜିଦେବେ ? ଡୋନାଲ୍‌ଡଙ୍କ ଆଖିରେ ଏ ଦୃଶ୍ୟ ନିଶ୍ଚୟ ପଡ଼ିବ; ତାଙ୍କର ଆସିବାବେଳ ହୋଇଗଲାଣି । ସେ ଆଉ ମୋତେ ଆଡ଼ଆଖିରେ ଚାହିଁବେନାହିଁ; ଆଉ ସେ ମୋତେ ଭଲପାଇବେନାହିଁ । ମୋ ପକ୍ଷରେ ମରିଯିବାହିଁ ଭଲ, ଏଲିଜାବେଥ୍, ମରିଯିବାହିଁ ଭଲ ।''

''ହାୟ, ହାୟ ! କ'ଣ କଲେ ଏ ପୋଡ଼ାଗୁଡ଼ାଙ୍କୁ ତଡ଼ିହେବ ବୁଝିପାରୁନାହିଁ ।'' —କହୁ କହୁ ଏଲିଜାବେଥ୍ ଦୌଡ଼ିଯାଇ ଝରକାଟା ବନ୍ଦକରିଦେଲା; କିନ୍ତୁ ଲୁସେଟା ଆସି ଝରକା ଖୋଲିଦେଇ କହିଲେ, ''ଖୋଲ, ଖୋଲ, ମୁଁ ନିଜେ ଦେଖିବି, ମୁଁ ଦେଖିବି ।''

ଝରକା ଖୋଲିବାରୁ ଦେଖାଗଲା ସ୍କିମିଟି ନାଚବାଲାଏ ହୋହଲ୍ଲା କରି ତାଙ୍କ ଫାଟକ ପାଖ ରାସ୍ତାରେ ଜମାହୋଇ କୁହାଟ ମାରୁଛନ୍ତି । ଗଧ ଉପରେ

ବସାଯାଇଥିବା ମୂର୍ତ୍ତି ଦୁଇଟା ପାଖରେ ଅସଂଖ୍ୟ ଆଲୁଅ ଜଳୁଥାଏ; ଦୃଶ୍ୟଟା ଆଉ ଲୁଚିରହିବାର ନୁହେଁ । ଯେ କେହି ଲୋକ ଦେଖିଲେ କହିଦେବ, ସେ ମୂର୍ତ୍ତି ଦୁଇଟା ଲୁସେଟା ଓ ହେଞ୍ଚାର୍ଡ଼୍‌ଙ୍କର ମୂର୍ତ୍ତି । ଏଲିଜାବେଥ୍ ବ୍ୟସ୍ତ ହୋଇ କହିଲା, ''ଛିଃ ଛିଃ, ଏ ଅପରଛନିଆଁ ଦୃଶ୍ୟ ଦେଖିବାରନୁହେଁ; ଉଠନ୍ତୁ, ମୁଁ ଝରକା ବନ୍ଦ କରେ ।''

ଲୁସେଟା ପାଗଳୀଙ୍କ ପରି ଅଟ୍ଟହାସ୍ୟ କରି କହିଉଠିଲେ, ''ହଁ, ସେଇଟା ମୋ ମୂର୍ତ୍ତି, ହଁ ସେଇଟା ମୋ ମୂର୍ତ୍ତି ।'' କହୁ କହୁ ତାଙ୍କର ହାତଗୋଡ଼ ଖଲ ମାରିଗଲା, ମୁଣ୍ଡ ବୋଧହୁଏ ବୁଲେଇଦେଲା; ସେ କଟାଡ଼ିହୋଇ ତଳେ ପଡ଼ିଗଲେ ।

ଗୋଟାଏ ଆର୍ତ୍ତଚିତ୍କାର କରି ଏଲିଜାବେଥ୍ ଚାକରକୁ ଡାକ ପକାଇଲା । ଚାକରଚାକର ସବୁ ଫାଟକ ପାଖରେ ଠିଆହୋଇ ନାଚ ଦେଖୁଥିଲେ । ସେମାନେ ଡାକ ଶୁଣି ଦୌଡ଼ିଆସିଲେ । ରୋଷଘରୁ ରାନ୍ଧୁଣୀ ନାନୀ ବି ଦୌଡ଼ିଆସିଲେ । ସମସ୍ତେ ମିଶି ଟେକାଟେକି କରି ଲୁସେଟାଙ୍କୁ ପଲଙ୍କ ଉପରକୁ ନେଇଗଲେ । ଜଣେ ଚାକର ଦୌଡ଼ିଯାଇ ଡାକ୍ତରଙ୍କୁ ଡାକିଆଣିଲା । ଡାକ୍ତର ଆସି ତାଙ୍କୁ ଦେଖୁ ଦେଖୁ କହିଲେ, ''ଅବସ୍ଥା ଭଲନୁହେଁ; ଶୀଘ୍ର ଫର୍‌ଫ୍ରେ ସାହେବଙ୍କୁ ଖବର ଦିଅ; କୁଆଡ଼େ ଗଲେ ସେ ?''

ରାନ୍ଧୁଣୀ ନାନୀ କହିଲେ, ''ବାବୁ ବଡ୍‌ମାଉଥ୍ ରୋଡ୍‌ରେ କୋଉ ଗୋଟେ ଗାଆଁକୁ ଯାଇଛନ୍ତି; ଫେରିବାବେଳ ହୋଇଗଲାଣି ।''

''କିନ୍ତୁ ଫେରୁ ଫେରୁ ଡେରି ହୋଇଯାଇପାରେ; କେହି ଜଣେ ଯାଇ ଶୀଘ୍ର ଡାକି ଆଣ, ''କହି ଡାକ୍ତର ଲୁସେଟାଙ୍କ ପାଖରେ ବସି ଔଷଧ ଦେବାକୁ ଲାଗିଲେ । ଜଣେ ଚାକର ଘୋଡ଼ାନେଇ ଫର୍‌ଫ୍ରେଙ୍କୁ ଡାକି ଆଣିବାକୁ ବାହାରି ପଡ଼ିଲା । ତେଣେ ସ୍କିମିଟି ନାଚ ବାହାରିଛି ଶୁଣି ହେଞ୍ଚାର୍ଡ଼ ଆସି ବେପାରୀ ସାହି ମୁଣ୍ଡରେ ଠିଆହୋଇଥିଲେ । ମୂର୍ତ୍ତି ଦୁଇଟା ଦେଖିବାମାତ୍ରେ ସେ ସବୁ କଥା ବୁଝିଗଲେ । ମର୍ମାହତ ହୋଇ ସେ ଦୌଡ଼ିଗଲେ ଏଲିଜାବେଥ୍ ଜେନ୍‌ର ବସାକୁ । କିନ୍ତୁ ସେଠାକୁ ଯାଇ ଶୁଣିଲେ ଯେ ଏଲିଜାବେଥ୍ ଜେନ୍ ଶ୍ରୀମତୀ ଫର୍‌ଫ୍ରେଙ୍କ ଘରକୁ ଯାଇଛି । ସେ ଫର୍‌ଫ୍ରେଙ୍କ ଘରକୁ ଯାଇ ଫାଟକରେ ହାତ ମାରୁ ମାରୁ ଚାକରଟା ବାହାରିଆସି ସମସ୍ତ ଘଟଣା ବର୍ଣ୍ଣନା କରିଗଲା । କହିଲା, ''ହେଇଟି ମୁଁ ପରା ବଡ୍‌ମାଉଥ୍ ରୋଡ୍‌କୁ ଯାଉଛି, ଶୀଘ୍ର ସାହେବଙ୍କୁ ଡାକି ଆଣିବାକୁ ପଡ଼ିବ ।''

ବ୍ୟସ୍ତହୋଇ ହେଞ୍ଚାର୍ଡ଼ କହିଲେ, ''ଆରେ ସେ ତ ୱେଦରବରି ଯାଇଛନ୍ତି; ତୁମେ ବଡ଼୍‌ମାଉଥ୍ ରୋଡ଼୍‌ରେ ତାଙ୍କୁ ପାଇବ କୋଉଠୁ ?''

ହାୟ, ବିଚରା ହେଞ୍ଚାର୍ଡ଼ ! ସମ୍ପତ୍ତିବାଡ଼ି ଶେଷ ହୋଇଯିବା ଦିନଠାରୁ ତାଙ୍କର ମାନସମ୍ମାନ ବି ନଷ୍ଟ ହୋଇଯାଇଥିଲା । ଚାକରଟା ତାଙ୍କ କଥାରେ ବିଶ୍ୱାସ ନଯାଇ ଭାବିଲା, 'ଇଏ ତ ଫର୍‌ଫ୍ରେଙ୍କୁ ଘୃଣା କରନ୍ତି; ଇଏ ମୋଟେ ସତ କହୁନଥିବେ ।' ଫଳତଃ ସ୍ୱାମୀଙ୍କୁ ଫେରିବା ଓ ଆଶ୍ୱାସନା ଦେବା ଉପରେ ଲୁସେଟାଙ୍କର ଜୀବନ ଅନେକଟା ନିର୍ଭର କରୁଥିଲେ ବି ଫର୍‌ଫ୍ରେଙ୍କୁ ଡାକିବାଲାଗି କେହି ୱେଦର୍‌ବରି ଗଲେନାହିଁ । ପ୍ରାୟ ଦୁଇ ଘଣ୍ଟା ପରେ ସେ ଗାଆଁରେ କାମଦାମ ଶେଷ କରି ଫର୍‌ଫ୍ରେ ଘରକୁ ଫେରନ୍ତି ତ, ଦେଖିଲେ ଲୁସେଟା ଭୀଷଣ ଅସୁସ୍ଥ ହୋଇପଡ଼ିଛନ୍ତି । ସେ ପଲଙ୍କ ଉପରେ ବସି ତାଙ୍କୁ ଆଉଁଶି ଦେବାକୁ ଲାଗିଲେ । ଲୁସେଟା ଚାହିଁଲେ, ସେ ତାଙ୍କୁ କେତେଟା ଗୋପନ କଥା କହିଦେବେ; କିନ୍ତୁ ଫର୍‌ଫ୍ରେ ତାଙ୍କୁ ଆଶ୍ୱାସନା ଦେଇ କହିଲେ, ''ହଉ, ପ୍ରଥମେ ସୁସ୍ଥ ହୋଇ ବସ; କଥା କହିବାଲାଗି ଅନେକ ବେଳ ପାଇବ ।''

ଫର୍‌ଫ୍ରେ ଏ ସ୍କିମିଟି ନାଚ ବିଷୟରେ କିଛି ଶୁଣିନଥିଲେ । କିନ୍ତୁ ଶ୍ରୀମତୀ ଫର୍‌ଫ୍ରେଙ୍କର ଅସୁସ୍ଥ ହୋଇପଡ଼ିବା ସମ୍ବାଦଟା ସହରତମାମ ବ୍ୟାପିଯାଇଥିଲା । ଯେଉଁମାନେ ଏ ନାଚର ଆୟୋଜନ କରିଥିଲେ, ସେମାନେ ଏପରି ଏକ ପରିସ୍ଥିତି ସୃଷ୍ଟି ହେବ ବୋଲି ଆଶଙ୍କା କରିନଥିଲେ । ସେମାନେ ତରତର ହୋଇ ସେ ପାଳକୁଟା-ତିଆରି ମୂର୍ତ୍ତି ଦୁଇଟା ଭାଙ୍ଗି ନଷ୍ଟ କରିଦେଲେ । ଲୁସେଟାଙ୍କର ପାଖପଡ଼ିଶା ଲୋକେ ଅବା ଫର୍‌ଫ୍ରେଙ୍କୁ ଏପରି ଏକ କଥା କିପରି କହନ୍ତେ ? ଏସବୁ ସତ୍ତ୍ୱେ ଲୁସେଟାଙ୍କ ସ୍ୱାସ୍ଥ୍ୟର କୌଣସି ଉନ୍ନତି ହେଲା ନାହିଁ; ବେଳୁବେଳ ଅବସ୍ଥା ଉଦ୍‌ବେଗଜନକ ହେବାକୁ ଲାଗିଲା । ଡାକ୍ତର ରାତିତମାମ ଜଗିରହିଲେ ।

ବିଚରା ହେଞ୍ଚାର୍ଡ଼ ବି ଶାନ୍ତିରେ ଶୋଇ ବସିପାରିଲେନାହିଁ । ଲୁସେଟାଙ୍କର ଅବସ୍ଥା ଜାଣିବାଲାଗି ସେ ରାତିତମାମ ବେପାରୀ ସାହିର ଏମୁଣ୍ଡରୁ ସେମୁଣ୍ଡ ହେଉଥାନ୍ତି । ସୁଯୋଗ ପାଇବାମାତ୍ରେ ଫର୍‌ଫ୍ରେଙ୍କ କବାଟ ପାଖକୁ ଆସି ଝିଅକୁ ଡାକି ଲୁଚି ଲୁଚି ଲୁସେଟାଙ୍କ ଖବର ବୁଝିଯାଆନ୍ତି । ପାହାନ୍ତିଆ ଚାରିଟାବେଳକୁ ସେ ଆଉଥରେ ଆସି ଖବର ନିଅନ୍ତି ତ ଜଣେ ଚାକର ବିଷଣ୍ଣ ମୁହଁରେ ଭିତରୁ ଚାଲିଆସିଲା ।

''ଅବସ୍ଥା କିପରି ଅଛି ? କଥାଭାଷା କରୁଛନ୍ତିଟି ?'' ହେଞ୍ଚାର୍ଡ଼ ପଚାରିଲେ ।

ଚାକରଟା କହିଲା, ''ଆଉ କଥାଭାଷା ! ...ଏଥର ଯେତେ ଡାକିଲେ ବି ତାଙ୍କ କାନ ଶୁଣିପାରିବନାହିଁ କି ପାଟିରୁ କଥା ବାହାରିବନାହିଁ— ସବୁ ଶେଷ ।''

# ତେର

ବିଦଗ୍ଧ-ହୃଦୟ ନେଇ ହେଞ୍ଚାର୍ଡ଼ ଘରକୁ ଫେରିଆସିଲେ । ଚୁଲିରେ ଟିକିଏ ନିଆଁ ଜାଳିଦେଇ ଉଷ୍ମମରେ ବସୁ ବସୁ ବୁଡ଼ିଗଲେ କେଉଁ ଏକ ଭାବନା-ରାଜ୍ୟରେ । ରାତି ପାହି ସକାଳ ହେଲା । ସୂର୍ଯ୍ୟାଲୋକରେ ଚାରିଆଡ଼ ଉଜ୍ଜ୍ୱଳ ହୋଇଗଲା । ହେଞ୍ଚାର୍ଡ଼ କିନ୍ତୁ ସେହି ଚୁଲି ପାଖରେ ଭାବନାବିହ୍ୱଳ ହୋଇ ବସିଥାନ୍ତି । ଏ ସମୟରେ କିଏ ଜଣେ ଆସି କବାଟରେ ହାତମାରି ଡାକିଲା । ସେ ଡାକ ଶୁଣୁ ଶୁଣୁ ହେଞ୍ଚାର୍ଡ଼ଙ୍କର ଭାବନା ଦୂର ହୋଇଗଲା । ସେ ସହାସ୍ୟ ବଦନରେ ଯାଇ କବାଟ ଖୋଲିଦେଲେ । ଘର ଭିତରକୁ ଚାଲିଆସିଲା ଝିଅ ଏଲିଜାବେଥ୍ । ଦୁଃଖ ଓ ଅବସାଦରେ ମୁହଁଟି ତା'ର ମଉଳିଯାଇଥାଏ । ଆସୁ ଆସୁ ସେ ପଚାରିଲା, ''ବାପା, ତୁମେ ଶୁଣିଲ ତ ? ଶ୍ରୀମତୀ ଫର୍‌ଫ୍ରେ ମରିଗଲେ ।''

''ହଁ, ଶୁଣିଲିଣି । ଯାହାହେଉ ତୁ ଖବରଟା ଦେବାଲାଗି ଚାଲିଆସିଲୁ, ଖୁବ୍ ଭଲ ହେଲା । ରାତିସାରା ଅନିଦ୍ରା ରହି ତତେ ବଡ଼ ହାଲିଆ ଲାଗୁଥିବ; ଯା ଟିକିଏ ଶୋଇପଡ଼ିବୁ । ଆର ଘରେ ମୋର ଶେଯ ପଡ଼ିଛି, ତୁ ଶୋଇପଡ଼ କି, ସକାଳ ଜଳଖିଆ ତିଆରି ସରିଲେ ମୁଁ ତତେ ଉଠାଇଦେବି ।''

ହଠାତ୍ ବାପାଙ୍କର ଏ କୋମଳ ବ୍ୟବହାର ଦେଖି ବିସ୍ମିତ ହୋଇଗଲେ ବି ନିଃସଙ୍ଗ ନିଃସହାୟ ଏଲିଜାବେଥ୍‌ର ହୃଦୟ କୃତଜ୍ଞତାରେ ପୂର୍ଣ୍ଣ ହୋଇଗଲା । ବାପାଙ୍କ ଅନୁରୋଧ ରକ୍ଷାକରି ସେ ଯାଇ ବିଶ୍ରାମ ନେବାଲାଗି ତାଙ୍କ ଶେଯରେ ଶୋଇପଡ଼ିଲା । ହେଞ୍ଚାର୍ଡ଼ ଏଣେ ଜଳଖିଆ ତିଆରି କରିବା ଆରମ୍ଭ କରିଦେଲେ; ଏଲିଜାବେଥ୍ ତେଣେ ବିଶ୍ରାମ ନେଉ ନେଉ ନିଘୋଡ଼ ନିଦରେ ଶୋଇପଡ଼ିଲେ । କିଛି ସମୟ ମଧ୍ୟରେ ଜଳଖିଆ ତିଆରି ହୋଇଗଲା, ଏଲିଜାବେଥ୍‌କୁ ନିଦରୁ ଉଠାଇବାଲାଗି ହେଞ୍ଚାର୍ଡ଼ଙ୍କର ଇଚ୍ଛା ହେଲାନାହିଁ । ଘରକୁ କୁଣିଆ ଆସିଥିଲେ ତାଙ୍କୁ ସମ୍ମାନ ଓ ତୃପ୍ତି ଦେବାଲାଗି ଲୋକେ ଯେପରି ତତ୍ପର ହୋଇଉଠନ୍ତି,

ତାଙ୍କଠାରେ ସେହିପରି ଏକ ତତ୍ପରତା ଆସିଯାଇଥିଲା । ଚାହା ଓ ଜଳଖିଆ ଉଷୁମ ରଖିବାଲାଗି ସେସବୁକୁ ଚୁଲି ପାଖରେ ଥୋଇଦେଇ ସେ ଏଲିଜାବେଥ୍‌ର ଉଠିବାପାଇଁ ଅପେକ୍ଷା କରିବାକୁ ଲାଗିଲେ । ଏଲିଜାବେଥ୍‌କୁ ନିକଟରେ ପାଇ ସତରେ ତାଙ୍କ ଭିତରେ ଗୋଟାଏ ପରିବର୍ତ୍ତନ ଚାଲିଆସିଥିଲା । ତା'ର ଉପସ୍ଥିତିକୁ ନେଇ ତାଙ୍କ ଆଖିଆଗରେ ନାଚିଉଠିଲା ଏକ ମଧୁର ଭବିଷ୍ୟତର ସ୍ୱପ୍ନ ।

ସେ ସ୍ୱପ୍ନବିଭୋର ହୋଇ ବସିଛନ୍ତି, ଏ ସମୟରେ କବାଟ ଖଡ଼୍‌ଖଡ଼୍ କରି କେହି ଜଣେ ଡାକିଲା । ହେଞ୍ଚାର୍ଡ଼୍‌ଙ୍କର ସ୍ୱପ୍ନ ଭାଙ୍ଗିଗଲା । ସେ ଯାଇ କବାଟ ଖୋଲି ଦେଖନ୍ତି ତ ଦୁଆରେ ଠିଆହୋଇଛନ୍ତି ଜଣେ ସୁସ୍ଥ, ସବଳ ବୟସ୍କ ଲୋକ । ମୁହଁଟି ହସହସ, ଲାଲ ଓ ମଧୁର । 'ସୁପ୍ରଭାତ' ଜଣାଇ ହେଞ୍ଚାର୍ଡ଼୍ ତାଙ୍କୁ ପଚାରିଲେ, ''କାହାକୁ ଖୋଜୁଛନ୍ତି, ମହାଶୟ ?''

''ସୁପ୍ରଭାତ, ସୁପ୍ରଭାତ । ଏଇଟା ଶ୍ରୀଯୁକ୍ତ ମାଇକେଲ ହେଞ୍ଚାର୍ଡ଼୍‌ଙ୍କ... ?'' ଆଗନ୍ତୁକ ପଚାରିଲେ ।

''ହଁ, ହଁ; ମୋରି ନାଁ ମାଇକେଲ୍ ହେଞ୍ଚାର୍ଡ଼୍ । ଆସନ୍ତୁ, ଭିତରକୁ ଆସନ୍ତୁ ।'' କହି ହେଞ୍ଚାର୍ଡ଼୍ ତାଙ୍କୁ ଭିତରକୁ ପାଛୋଟି ଆଣିଲେ ।

ଚଉକିରେ ବସୁ ବସୁ ଆଳାପ ଆରମ୍ଭ କରିଦେଇ ଆଗନ୍ତୁକ କହିବସିଲେ, ''ଆପଣଙ୍କର ମନେଥିବ କି ନା କହିହେଉନାହିଁ... ମୋ ନାଁ ରିଚାର୍ଡ଼୍ ନ୍ୟୁସନ୍ ।''

ନାଆଁଟା ଶୁଣୁ ଶୁଣୁ ହେଞ୍ଚାର୍ଡ଼୍‌ଙ୍କର ମନେହେଲା ତାଙ୍କ ମୁହଁ ଓ ଆଖିରୁ ସବୁ ଜ୍ୟୋତି ଯେପରି ଲିଭି ଲିଭି ଯାଉଛି; ଜୀବନଟା ଛାଡ଼ି ଛାଡ଼ି ଯାଉଛି । ରିଚାର୍ଡ଼୍ ନ୍ୟୁସନ୍ ଅବଶ୍ୟ ଏସବୁ ଲକ୍ଷ୍ୟ କରିପାରିଲେନାହିଁ । ତଳକୁ ମୁହଁ ପୋତି ହେଞ୍ଚାର୍ଡ଼୍ କହିଲେ, ''ହଁ, ମୋର ବେଶ୍ ମନେଅଛି ।''

ଟିକିଏ ହସିଦେଇ ନ୍ୟୁସନ୍ କହିଲେ, ''ମୋର ବି ବିଶ୍ୱାସ ଯେ ଆପଣଙ୍କର ମନେଥିବ । ଗତ ପନ୍ଦର ଦିନ ହେଲା ମୁଁ ଆପଣଙ୍କୁ ଖୋଜିବୁଲୁଛି । ସୁସନ୍ ବୋଧହୁଏ ଆପଣଙ୍କୁ ଆମ କଥାସବୁ କହିଥିବେ । କଥା କ'ଣ କି, ସେ ବିଚାରି ଅତି ସରଳା । ମେଳା ପଡ଼ିଆରେ ଆପଣ ସେ ଯେଉଁ ବିକିଦେଲେ, ସେଇଟାକୁ ସେ ବିକ୍ରୟ ବୋଲି ନଧରି ଭାବିଲେ ତାହା ଚର୍ଚ୍ଚରେ ବିବାହ କରିବା ସହିତ ସମାନ । ଫଳରେ ସେହିଦିନଠାରୁ ବହୁ ବର୍ଷ ପର୍ଯ୍ୟନ୍ତ ସେ ମୋ ପାଖରେ ନିଃସଙ୍କୋଚରେ ଖୁସିରେ ରହିଗଲେ । ଆପଣଙ୍କର ସେ ଝିଅଟି ମରିଯିବା ପରେ ଆମର ଗୋଟିଏ ଝିଅ ଜନ୍ମ ହେଲା । ଏପରି ଭାବରେ ଆନନ୍ଦରେ କିଛିଦିନ

କଟିଯିବା ପରେ କେହି ଜଣେ ପଡ଼ୋଶୀ ସୁସାନ୍‌ଙ୍କୁ ବୁଝାଇଦେଲା ଯେ ତାଙ୍କୁ ମୋର ଧର୍ମପତ୍ନୀ ବୋଲି କୁହାଯାଇପାରିବନାହିଁ; ବରଂ ଏକଥା ଶୁଣିଲେ ଲୋକେ ନାନା ଅପମାନ ଦେଇ ଥଟ୍ଟା-ତାମସା କରିବେ । ସେତିକିବେଳୁ ତାଙ୍କ ମନର ଶାନ୍ତି ନଷ୍ଟ ହୋଇଗଲା । ସେ କହିଲେ, ଆଉ ମୋ ପାଖରେ ରହିପାରିବେନାହିଁ । କିନ୍ତୁ ଅଡୁଆ କଲା ଆମ ଝିଅଟି । ଶେଷରେ ମୋର ଜଣେ ବନ୍ଧୁ ମୋତେ ଗୋଟିଏ ଉପଦେଶ ଦେଲେ । ସେ ଅନୁଯାୟୀ ମୁଁ ସେ ଦୁହିଁଙ୍କୁ ଫଲ୍‌ମାଉଥ୍‌ରେ ଛାଡ଼ିଦେଇ ପୁଣି ଜାହାଜ ନେଇ ଚାଲିଗଲି । ଆଟଲାଣ୍ଟିକ୍ ମହାସାଗର ପାର ହୋଇ ଆମେରିକା ଯାଉଛି, ମଝି ଦରିଆରେ ଗୋଟାଏ ଭୟଙ୍କର ତୋଫାନ ଉଠିଲା । ତୋଫାନରେ ଆମ ଜାହାଜଟା ବୁଡ଼ିଗଲା; ଅନେକ ଲୋକ ମରିହଜିଗଲେ । ମୁଁ କିନ୍ତୁ ବର୍ତ୍ତିଯାଇ ନ୍ୟୁଫାଉଣ୍ଡଲ୍ୟାଣ୍ଡ୍ ଚାଲିଗଲି; ଭାବିଲି, ମୁଁ ସମୁଦ୍ର ତୋଫାନରେ ବୁଡ଼ି ମରିଗଲି ବୋଲି ସୁସାନ୍‌ଙ୍କ ପାଖକୁ ଖବର ପଠାଇଦେଲେ ଗୋଟାଏ ବିରାଟ ସମସ୍ୟା ସମାଧାନ ହୋଇଯିବ; କାରଣ ସେତକ ଜାଣିଲେ ସେ ବାଧ୍ୟହୋଇ ଆପଣଙ୍କ ଖୋଜଖବର ନେଇ ଆପଣଙ୍କ ପାଖକୁ ଆସି ରହିଯିବେ । ପ୍ରସ୍ତାବ ଅନୁଯାୟୀ ଖବର ପଠାଇଦେଲି; କିନ୍ତୁ ସେଦିନ ମୁଁ ଆଉ ଦେଶକୁ ଫେରିନଥିଲି; ଫେରିଲି ଏହି ମାସେ ତଳେ । ଆସି ଦେଖିଲି ମୋ ଅନୁମାନ ଠିକ୍ ଥିଲା । ସୁସାନ୍ କାଷ୍ଟରବ୍ରିଜ୍ ଆସି ଆପଣଙ୍କ ସହିତ ରହିଯାଇଥିଲେ; କିନ୍ତୁ ଦୁଃଖର ବିଷୟ ଯେ ଏ ଭିତରେ ତାଙ୍କର ଦେହାନ୍ତ ହୋଇଗଲାଣି । ଖବରଟା ପାଇ ମୁଁ ଏଠିକି ଦୌଡ଼ିଆସି ଆପଣଙ୍କୁ ଖୋଜା ଲଗେଇଥିଲି । ଏତେଦିନକେ ଆଜି ଭେଟ ହେଲା । କାହିଁ, ମୋ ଝିଅ ଏଲିଜାବେଥ୍ ଜେନ୍ କାହିଁ ?''

ମୁହଁ ତଳକୁପୋତି ଧୀରଭାବରେ ହେଞ୍ଚାର୍ଡ଼ କହିଦେଲେ, ''ଝିଅଟି ବି ମରିଗଲା । ଆପଣ ବୋଧହୁଏ ସେ ଖବର ପାଇନାହାନ୍ତି ।''

ନାବିକ ନ୍ୟୁସନ୍ ଚମକି ପଡ଼ିଲେ । ବସିଥିବା ସ୍ଥାନରୁ ଉଠିପଡ଼ି ଭାରାକ୍ରାନ୍ତ ହୃଦୟଟା ନେଇ କୋଠରି ଭିତରେ ପଦଚାରଣ କରୁ କରୁ ତାଙ୍କ ମୁହଁରୁ ବାହାରିପଡ଼ିଲା, ''ମରିଗଲା ! ଆଉ ତେବେ ମୋର ସମ୍ପତ୍ତିରେ କି ପ୍ରୟୋଜନ !!''

କୌଣସି ମନ୍ତବ୍ୟ ନକରି ହେଞ୍ଚାର୍ଡ଼ କେବଳ ମୁଣ୍ଡ ଟୁଙ୍ଗାରିବାରେ ଲାଗିଲେ । ନ୍ୟୁସନ୍ ପଚାରିଲେ, ''ଝିଅ ମରିବାର କେତେ ଦିନ ହୋଇଗଲା ?''

ବିନାଦ୍ୱିଧାରେ ହେଞ୍ଚାର୍ଡ଼ କହିଦେଲେ, ''ଆସି ବର୍ଷେ ହୋଇଗଲାଣି ।''

ନ୍ୟୁସନ୍ ସ୍ତମ୍ଭୀଭୂତ ହୋଇଗଲେ; ତାଙ୍କ ମୁହଁରୁ କଥା ବାହାରିଲାନାହିଁ । ହେଞ୍ଚାର୍ଡ଼ ମୁହଁ ପୋତି ବସିଥାନ୍ତି । ଶେଷରେ ନ୍ୟୁସନ୍ କହିଲେ, ''ମୋର ସବୁ ପରିଶ୍ରମ ପଣ୍ଡ ହୋଇଗଲା । ଏଇଟାହିଁ ମୋ କୃତକର୍ମର ଉପଯୁକ୍ତ ଫଳ । ହଉ, ଆପଣଙ୍କୁ ବୃଥାରେ ବ୍ୟସ୍ତ କଲି; କ୍ଷମା କରିବେ । ମୁଁ ଯାଏ ।''

ନ୍ୟୁସନ୍ ବିଦାୟ ନେଇ ଚାଲିଗଲେ । ଧୀରେ ଧୀରେ କୋଠରିରୁ ତାଙ୍କ ଛାୟା ଅପସରିଗଲା । ଦ୍ୱାର ବନ୍ଦହେବା ଶବ୍ଦ ଶୁଭିଲା । ହେଞ୍ଚାର୍ଡ଼ ନିଜର ବସିଥିବା ସ୍ଥାନରୁ ଘୁଞ୍ଚିଲେନାହିଁ । ସେମିତି ସେଇଠି ବସିରହିଲେ । ଏଲିଜାବେଥ୍ ପ୍ରତି ତାଙ୍କର ମନଟା ଦିନୁଦିନ ଅଧିକ ସ୍ନେହାର୍ଦ୍ର ହୋଇ ଚାଲିଥିଲା । ମନରେ ଗୋଟାଏ ଆଶା ଜାଗିଉଠିଥିଲା ଯେ ତାହାରି ସେବାଶୁଶ୍ରୂଷା ପାଇ ତାଙ୍କର ନିଃସଙ୍ଗ ନିଃସହାୟ ଜୀବନଟା ଅନ୍ତତଃ ଟିକିଏ ଆରାମରେ କଟିଯିବ । ସେହି ଲୋଭର ବଶବର୍ତ୍ତୀ ହୋଇ ଭବିଷ୍ୟତ ଫଳାଫଳ ପ୍ରତି ଭ୍ରୂକ୍ଷେପ ନକରି ସେ ନ୍ୟୁସନ୍‌ଙ୍କ ଆଗରେ ଛୁଆଙ୍କ ପରି ତାହା ମିଛଗୁଡ଼ାକ କହିଗଲେ । ସେ ଅବଶ୍ୟ ଭୟ କରୁଥିଲେ ଯେ ନାବିକ ନ୍ୟୁସନ୍ ତାଙ୍କୁ ସବୁ କଥା ଟିକିନିଖି କରି ପଚାରି ପାଞ୍ଚଟା ମିନିଟ୍ ଭିତରେ ତାଙ୍କୁ ମିଛୁଆ ବୋଲି ପ୍ରମାଣ କରିଦେବେ । କିନ୍ତୁ ସୌଭାଗ୍ୟକୁ ନ୍ୟୁସନ୍ କାହିଁକି କିଛି ପଚାରିଲେନାହିଁ । ନ୍ୟୁସନ୍ ଫେରିଯିବା ପରେ ସେ ଭାବିଲେ, ଏ ସିନା ଏଇଲେ ଚାଲିଗଲେ; କିନ୍ତୁ ବୋଧହୁଏ ସହରରେ ଏଠି ସେଠି ପଚାରି ସତ କଥାଟା ଜାଣିପକାଇବେ; ଆଉ ଅଳ୍ପ ସମୟ ମଧ୍ୟରେ ସେ ଫେରିଆସି ନାନା ଭର୍ତ୍ସନା ଦେଇ ତାଙ୍କ ପାଖରୁ ଏଲିଜାବେଥ୍‌କୁ ଛଡ଼ାଇନେବେ । ତାଙ୍କର ଶେଷ ଆଶ୍ରୟ, ଶେଷ ସମ୍ପଦଟିକକ ବି ହାତରୁ ଚାଲିଯିବ ।

କିନ୍ତୁ ନ୍ୟୁସନ୍ ଫେରିଲେନାହିଁ । ହେଞ୍ଚାର୍ଡ଼ଙ୍କ କଥାକୁ ଯେ ଅବିଶ୍ୱାସ କରାଯାଇପାରିବ, ସେକଥା ସେ ଆଦୌ ଭାବିନଥିଲେ । ତେଣୁ ସେ ସଙ୍ଗେ ସଙ୍ଗେ କାଷ୍ଟରବ୍ରିଜ୍ ଛାଡ଼ି ଚାଲିଗଲେ । ଫଳତଃ, ନିଜର ପ୍ରକୃତ ପରିଚୟ ପାଇବାରୁ ବଞ୍ଚିତ ହୋଇ ହେଞ୍ଚାର୍ଡ଼ଙ୍କୁ ହିଁ ନିଜର ବାପା ବୋଲି ଏଲିଜାବେଥ୍ ତାଙ୍କରି କୁଡ଼ିଆ ଘରେ ରହିଗଲା । ତା'ର ଉପସ୍ଥିତି ତାଙ୍କ ହୃଦୟରେ ଆଣିଦେଲା ଶାନ୍ତି; ଭରିଦେଲା ଆନନ୍ଦ । ହେଞ୍ଚାର୍ଡ଼ଙ୍କର ଅଦ୍ଭୁତ ପ୍ରକୃତି ସହିତ ପରିଚିତ ହୋଇଯିବା ଫଳରେ ଏଲିଜାବେଥ୍ ତାଙ୍କର ଉପଯୁକ୍ତ ସେବା କରିବାରେ ତ୍ରୁଟି କଲାନାହିଁ; ତାଙ୍କ ପ୍ରତି ତା'ର ସ୍ନେହ ସହାନୁଭୂତି କ୍ରମଶଃ ବଢ଼ିଚାଲିଲା ।

ପ୍ରଥମେ ପ୍ରଥମେ ହେଞ୍ଚାର୍ଡ଼ଙ୍କ ଘରଆଡ଼େ ଫର୍‌ଫ୍ରେ ମୋଟେ ଆସୁନଥିଲେ; କିନ୍ତୁ ସ୍ତ୍ରୀର ମୃତ୍ୟୁ ତାଙ୍କ ପରି କର୍ମଚଞ୍ଚଳ ଯୁବକଙ୍କୁ ବେଶି ଦିନ ମ୍ରିୟମାଣ କରି ରଖିପାରିଲାନାହିଁ । କ୍ରମେ କ୍ରମେ ସେ ଲୁସେଟାଙ୍କର ବ୍ୟାଧିର କାରଣ କ'ଣ, ତାହା ଜାଣିବାକୁ ପାଇଗଲେ । ସବୁ ଶୁଣି ସେ ଆଶ୍ୱସ୍ତ ହେଲେ ଯେ ଲୁସେଟାଙ୍କର ମୃତ୍ୟୁ ତାଙ୍କୁ ବହୁ ପଶ୍ଚାତାପରୁ ରକ୍ଷା କରିଛି । ଦିନେ ନା ଦିନେ ସେ ଏସବୁ ଗୁପ୍ତକଥା ଶୁଣିବାକୁ ପାଇଥାନ୍ତେ; ସେ ସବୁ ଶୁଣିବା ପରେ ଯେ ଦାମ୍ପତ୍ୟ ଜୀବନଟା ସୁଖମୟ ହୋଇଥାନ୍ତା, ତାହା ସେ ବିଶ୍ୱାସ କରିପାରିଲେନାହିଁ । ଜୀବନଟାକୁ ପୁଣି କର୍ମମୁଖର କରିବାଲାଗି ସେ କ୍ରମଶଃ ବନ୍ଧୁମାନଙ୍କ ଘରକୁ ବୁଲିଯିବାକୁ ଲାଗିଲେ । ସେହି ବୁଲିଯିବା ଭିତରେ ଏଲିଜାବେଥ୍ ସହିତ ବାରମ୍ବାର ସାକ୍ଷାତ୍ କରିବାର ସୁଯୋଗ ବି ମିଳିଗଲା ।

ଏପରି ଭାବରେ ବର୍ଷେଖଣ୍ଡେ ବିତିଯିବା ପରେ ହେଞ୍ଚାର୍ଡ଼ ଅନୁଭବ କଲେ, ଫର୍‌ଫ୍ରେ ପୁଣି ଏଲିଜାବେଥ୍‌ର ପ୍ରେମରେ ପଡ଼ିଲେଣି । ରାସ୍ତାଘାଟରେ ବା ଦୋକାନ-ବଜାରରେ କେଉଁଠି ଯଦି ଦେଖାହୋଇଗଲା, ତେବେ ଫର୍‌ଫ୍ରେ ଆଶାୟିତ ନୟନରେ ଏଲିଜାବେଥ୍‌କୁ ଚାହିଁରହନ୍ତି; କୌଣସି ନା କୌଣସି ଆଳ କରି ତା' ସହିତ ଦୁଇଚାରି ପଦ କଥା ହୋଇଯାଆନ୍ତି । ଦିନଥିଲା, ଯେତେବେଳେ ହେଞ୍ଚାର୍ଡ଼ ତାଙ୍କର ସ୍ନେହର ଏଲିଜାବେଥ୍‌କୁ ଏହି ଶତ୍ରୁତୁଲ୍ୟ ଫର୍‌ଫ୍ରେଙ୍କ ସହିତ ବିବାହଦେବା କଳ୍ପନାଟାକୁ ବି ଘୃଣା କରୁଥିଲେ; କିନ୍ତୁ ବର୍ତ୍ତମାନ ସେ ଆଉ ସେ ପୂର୍ବର ହେଞ୍ଚାର୍ଡ଼ ହୋଇ ରହିନଥିଲେ । ଏ ଭିତରେ ସେ ଏଲିଜାବେଥ୍‌ର ଆଶା ଓ ଆକାଙ୍‌କ୍ଷାକୁ ବି ସମ୍ମାନ ଦେବାକୁ ଶିଖିଯାଇଥିଲେ । ସେ ତା'ର ଅପ୍ରିୟ ହେବାକୁହିଁ ଭୟ କରୁଥିଲେ । ବିବାହ କରିଗଲେ ସେ ତାଙ୍କଠାରୁ ପୃଥକ୍ ହୋଇଯିବାର ଭୟ ରହିଥିଲେ ବି ଫର୍‌ଫ୍ରେଙ୍କ ସହିତ ତା'ର ମଧୁର ସମ୍ପର୍କରେ ବାଧା ଦେବାକୁ ହେଞ୍ଚାର୍ଡ଼ ଉଚିତ ମନେକଲେ ନାହିଁ ।

ଏଲିଜାବେଥ୍ ସହିତ ଫର୍‌ଫ୍ରେଙ୍କର ପ୍ରେମାଳାପ ଶୁଣିଲେ ତାଙ୍କର ଛାତି ଭିତରଟା କରତି ହୋଇଯାଏ; ତଥାପି ସେ ସେଥିରେ ବ୍ୟାଘାତ କରନ୍ତିନାହିଁ । ଦିନକର କଥା– ରାସ୍ତାକଡ଼ର ଗୋଟିଏ ପାଚେରି ପାଖରେ ଏଲିଜାବେଥ୍ ଠିଆ ହୋଇଥାଏ । ଦେଖାଗଲା ସେ ପାଖରୁ ଫର୍‌ଫ୍ରେ ଆସି କହିଲେ, ''ଆହା ମୋ ପ୍ରାଣର ଏଲିଜାବେଥ୍, କେତେବେଳୁ ମୋ ପାଇଁ ଏଠାରେ ଅପେକ୍ଷା କଲଣି

ସତେ !'' କହୁ କହୁ ସେ ତାଙ୍କୁ ଆଲିଙ୍ଗନ କରି ଚୁମ୍ବନ ଦେଇଦେଲେ । ତା'ପରେ ଦିହେଁ ହାତ ଧରାଧରି ହୋଇ ବୁଲି ବାହାରିଗଲେ ।

ଫର୍‌ଫ୍ରେ ଏବଂ ଏଲିଜାବେଥ୍ ମଧ୍ୟରେ ଯେଉଁ ସମ୍ପର୍କଟା ଗଢ଼ିଉଠୁଛି ବୋଲି ହେଞ୍ଚାର୍ଡ଼ ଭାବୁଥିଲେ, ତା'ର ସ୍ପଷ୍ଟ ପ୍ରମାଣ ମିଳିଗଲା ।

ଭାରାକ୍ରାନ୍ତ ହୃଦୟ ନେଇ ଠିକ୍ ସେମାନଙ୍କର ବିପରୀତ ଦିଗ ଧରି ହେଞ୍ଚାର୍ଡ଼ ସେଠାରୁ ଚାଲିଗଲେ । ଏଲିଜାବେଥ୍ ଯଦି ଅନ୍ୟ କାହାକୁ ଭଲପାଇ ବିବାହ କରନ୍ତା, ତା'ହେଲେ ସେ ବିବାହକୁ ସ୍ୱାଗତ କରନ୍ତେ; କିନ୍ତୁ ଯେଉଁ ଲୋକଟା ଅତୀତରେ ତାଙ୍କୁ ସର୍ବସ୍ୱାନ୍ତ କରିଦେଲା, ଯେଉଁ ଲୋକକୁ ସେ ଏତେ ଘୃଣା କରିଛନ୍ତି, ଏତେ ଅଭିଶାପ ଦେଇଛନ୍ତି, ନକରି ନକରି ଝିଅଟା ଶେଷରେ ତାକୁ ଭଲ ପାଇବସିଲା ! ହାୟରେ ଭାଗ୍ୟ !! ଯାହାହେଉ ଆଉଥରେ ଏଲିଜାବେଥ୍‌କୁ ଦେଖିବା ପୂର୍ବରୁ ମନର ରାଗଟାକୁ ସଂଯତ କରିବାଲାଗି ହେଞ୍ଚାର୍ଡ଼ କିଛି ସମୟ ଏକାକୀ ରହିବା ଉଚିତ ବୋଲି ମନେକଲେ ।

ଚାଲୁ ଚାଲୁ ସେ ପୋର୍ଟବ୍ରେଡ଼ି ରାସ୍ତା ଧରି ଚାଲିଗଲେ ସେହିପାଖକୁ, ଯେଉଁଠି ଏକଦା ସେ ଲୁସେଟା ଓ ଏଲିଜାବେଥ୍‌କୁ ମାରଣା ବଳଦମୁହଁରୁ ଉଦ୍ଧାର କରିଥିଲେ । ସେଇଠି ରାସ୍ତା କଡ଼ରେ ଖଣ୍ଡେ ବଡ଼ ପଥର ଉପରେ ବିଶ୍ରାମ ନେବାଲାଗି ବସିପଡ଼ିଲେ । ବସିଛନ୍ତି ଦେଖିଲେ ପୋର୍ଟ ବ୍ରେଡିଆଡୁ ଜଣେ ଲୋକ ଚାଲିଆସୁଛନ୍ତି; ଦେହରେ ଜାହାଜ କପ୍ତାନର ପୋଷାକ, ଲାଲ୍ ଟହଟହ ମୁହଁ । ହେଞ୍ଚାର୍ଡ଼ ତାଙ୍କୁ ଚାହୁଁ ଚାହୁଁ ଦୂରରୁହିଁ ଚିହ୍ନିପକାଇଲେ । ସେ ଯେ ନାବିକ ରିଚାର୍ଡ଼ ନ୍ୟୁସନ୍, ସେଥିରେ ଆଉ ସନ୍ଦେହ ରହିଲାନାହିଁ ।

ହେଞ୍ଚାର୍ଡ଼ ଠିଆ ହୋଇପଡ଼ି ଭାବିବାକୁ ଲାଗିଲେ । ନ୍ୟୁସନ୍ ତା' ହେଲେ ପୁଣି ଫେରିଆସିଲା ! ଏଥର ଶୀଘ୍ର ହେଉ ବା ବିଳମ୍ବରେ ହେଉ ଏଲିଜାବେଥ୍ ଜେନ୍ ସହିତ ତା'ର ନିଶ୍ଚୟ ସାକ୍ଷାତ୍ ହୋଇଯିବ । ଦେଖିବା ସଙ୍ଗେ ସଙ୍ଗେ ସେ ତାକୁ କହିଦେବ ଯେ, ସେ ତା'ର ପ୍ରକୃତ ବାପା । ଗତଥର କିପରି ମିଛ କହି ତାକୁ ଏଠାରୁ ଦୂରେଇଦିଆଯାଇଥିଲା, ସେକଥା ବି କହିଦେବ । ସତକଥାଟା କହିଦେବା ପରେ ଏଲିଜାବେଥ୍ ଯେଉଁ ଭର୍ତ୍ସନା କରିବ, ସେ ତାହା ସହିପାରିବେନାହିଁ । ମୁଣ୍ଡରେ ଏତକ ପଶିଯିବାମାତ୍ରେ ହେଞ୍ଚାର୍ଡ଼ ଆଉ କ୍ଷଣଟାଏ ବି ବିଳମ୍ବ ନକରି ବସାକୁ ଦୌଡ଼ିଆସିଲେ; ଅବିଳମ୍ବେ ସ୍ଥିର କରିନେଲେ ଯେ ସେ ଆଉ କାଷ୍ଟରବ୍ରିଜ୍‌ରେ ରହିବେନାହିଁ ।

ନୀରବରେ ଦୁଃଖ ସହିଯିବାଟା ତାଙ୍କର ଅଭ୍ୟାସଗତ ହୋଇଯାଇଥିଲା । ସେ ଭାବିଲେ କୌଣସି ଗୁରୁତ୍ୱ ନଦେଇ ଏଲିଜାବେଥ୍ ଆଗରେ ନିଜର ଉଦ୍ଦେଶ୍ୟ ପ୍ରକାଶ କରିଦେବେ; ତା'ଠାରୁ ବିଦାୟ ନେବା ପରେ ଅନ୍ୟ କାହାକୁ ମନର ଦୁଃଖ ବା ବେଦନା ନଜଣାଇ ସେ ସହର ଛାଡ଼ି ଚାଲିଯିବେ । ସୁତରାଂ ଘରେ ପହଞ୍ଚିବାକ୍ଷଣି କୌଣସି ଦରଦ ବା ମମତା ନଦେଖାଇ ସେ ତାକୁ ଶୁଣାଇଦେଲେ, ''ଏଲିଜାବେଥ୍, ମୁଁ ଆଜି କାଷ୍ଟରବ୍ରିଜ୍ ଛାଡ଼ି ଚାଲିଯିବି ।''

କାଷ୍ଟରବ୍ରିଜ୍ ଛାଡ଼ି ଚାଲିଯିବେ !'' —ଚମକିପଡ଼ିଲା ଏଲିଜାବେଥ୍ । ପଚାରିଲା, ''ମତେ ବି ଛାଡ଼ି ଚାଲିଯିବେ ?''

—ହଁ; ଆଉ ଏଠି ରହିବାକୁ ମୋତେ ଭଲଲାଗୁନି । ଭାବିଛି ମଫସଲ ଯାଇ ସେଠାରେ ଏକା ଏକା ରହିବି ।

ଦୁଃଖ ଓ ବେଦନାରେ ଏଲିଜାବେଥ୍‌ର ମୁଣ୍ଡ ପୋତିହୋଇଗଲା । ଆଖିରୁ ତା'ର ବହିଆସିଲା ଧାର ଧାର ଲୁହ । ଭାବିଲା, ସେ ଫର୍‌ଫ୍ରେଙ୍କୁ ଭଲପାଉଥିବାରୁହିଁ ବାପା ଏପରି ନିଷ୍ପତ୍ତି ନେଇଛନ୍ତି । ତା'ର ସନ୍ତପ୍ତ କଣ୍ଠରୁ ବାହାରିଆସିଲା, ''ଡୋନାଲ୍‌ଡ୍‌ଙ୍କ ହେତୁହିଁ ଆପଣ ଏପରି କହୁଛନ୍ତି ?''

ହେଞ୍ଚାର୍ଡ଼ କହିଲେ, ''ତାଙ୍କୁ ବିବାହ କରନାହିଁ ବୋଲି ତ ମୁଁ କହୁନାହିଁ । ମୋର ହଁ-ନାହିଁରେ ବା କ'ଣ ଅଛି, କହିଲୁ । ମୋ କଥାରେ କିଛି ଯାଏ-ଆସେ ନାହିଁ । ଭାବୁଛି, ମୁଁ ଏଠାରୁ ଚାଲିଯିବାହିଁ ସବୁଠାରୁ ଭଲ ହେବ; ସମସ୍ତଙ୍କର ମଙ୍ଗଳହେବ ।'' କହୁ କହୁ ତା' କପାଳରେ ଗୋଟିଏ କୋମଳ ଚୁମ୍ବନ ଦେଇ ଦରଦଭରା କଣ୍ଠରେ ଅନୁରୋଧ ଜଣାଇଲେ, ''ରାଣ ପକାଇ କହିଲୁ ମାଆ, ମୋତେ ଭୁଲିଯିବୁନି... ?'' ସେ ଚାହୁଁଥିଲେ ନ୍ୟୁସନ୍ ଆସିବା ପରେ ବି ସେ ଯେପରି ତାଙ୍କୁ ଭୁଲିନଯାଏ ।

ସେହି ସନ୍ଧ୍ୟାରେ ସେ ବଜାରକୁ ଯାଇ ଗୋଟିଏ ଥଳିରେ କିଛି ହାତହତିଆର କିଣିଆଣିଲେ । ପାଖରେ ଥିବା ସରଞ୍ଜାମତକ ମାଜି ଧୋଇ ସଫା କରିଦେଲେ । ନିତି-ମଜୁରିଆର ସାଧାରଣ ପୋଷାକ ଖଣ୍ଡିଏ ପିନ୍ଧି, କାନ୍ଧରେ ଥଳିଟିଏ ଝୁଲାଇ କାହାରିକି ନକହି ନପୋଛି ରାତାରାତ ସେ କାଷ୍ଟରବ୍ରିଜ୍ ଛାଡ଼ି ଚାଲିଗଲେ । ଏଲିଜାବେଥ୍ ଭିନ୍ନ ଅନ୍ୟ କେହି ଏକଥା ଜାଣିପାରିଲେନାହିଁ । ତାଙ୍କୁ କିଛି ବାଟ ବାଟେଇଦେଇ ବିଦାୟ ଦେଲାବେଳେ ବିଚାରୀ ଦୁଃଖ ଓ ଶୋକରେ ଭାଙ୍ଗିପଡ଼ିଲା । ହଳଦିଆ ଥଳିଖଣ୍ଡି କାନ୍ଧରେ ଝୁଲାଇ ପାଦ କାଢ଼ି ଆଗକୁ ଚାଲିଗଲେ ମାଇକେଲ୍

ହେଞ୍ଚାର୍ଡ଼ । ଆଖିରେ ଆଖିଏ ଲୁହ ଧରି ତାଙ୍କର ଯିବା ବାଟକୁ ଚାହିଁରହିଲା ଦୁଃଖିନୀ ଏଲିଜାବେଥ୍ ।

ତାକୁ ଏକୁଟିଆଟା ଘରକୁ ଫେରିବାକୁ ଭଲଲାଗିଲାନାହିଁ । ଭାବିଲା ଫର୍‌ଫ୍ରେଙ୍କ ଘରଆଡ଼େ ଯାଇ କଥାଭାଷା କରି ଫେରିବ । ସେ ଯାଇ ତାଙ୍କ ଫାଟକ ପାଖରେ ପହଞ୍ଚୁ ପହଞ୍ଚୁ ତାକୁ ପାଛୋଟି ନେବାଲାଗି ଭିତରୁ ଦୌଡ଼ି ଆସିଲେ ଫର୍‌ଫ୍ରେ– "ହେଇଟି, ଏଲିଜାବେଥ୍ ଚାଲିଆସିଲେଣି ! ବଡ଼ ଆନନ୍ଦର କଥା ଜେନ୍, ମୋ ଘରକୁ ଜଣେ ଅତିଥି ଆସିଛନ୍ତି, ସେ ଏଇଲେ ତୁମ କଥା ପଚାରୁଥିଲେ ।"

—ସତେ !

ଆସ, ଆସ କହି ଫର୍‌ଫ୍ରେ ତାକୁ ଘର ଭିତରକୁ ଡାକିଆଣି ବୈଠକଖାନାର କବାଟଟା ଫିଟାଇଦେଇ ଦେଖାଇଦେଲେ, ହେଇଟି, ଭଦ୍ରଲୋକ ବସିଛନ୍ତି ।

ବୈଠକଖାନାରେ ବସିଥିଲେ ସ୍ୱୟଂ ରିଚାର୍ଡ଼ ନ୍ୟୁସନ୍ । ଦୀର୍ଘ ଛଅ ବର୍ଷଧରି ଯେଉଁ ବାପାଙ୍କଠାରୁ ସେ ବିଚ୍ଛିନ୍ନ ହୋଇରହିଥିଲା, ତାଙ୍କୁ ଦେଖିବାକୁ ପାଇ ଏଲିଜାବେଥ୍‌ର ମନ ଆନନ୍ଦରେ ନାଚିଉଠିଲା; ତାହା ବର୍ଣ୍ଣନା କରିବା ନିଷ୍ପ୍ରୟୋଜନ । ଝିଅକୁ ଦେଖୁ ଦେଖୁ ଗର୍ବ ଓ ଆନନ୍ଦରେ ନ୍ୟୁସନ୍‌ଙ୍କ ଛାତି ଫୁଲିଉଠିଲା; ତା'ର ଲଲାଟରେ ବାରମ୍ବାର ଚୁମ୍ବନ ଦେଇ ସେ ବହୁଦିନର ସଞ୍ଚିତ ସ୍ନେହ ଢାଳିବାକୁ ଲାଗିଲେ । ହେଞ୍ଚାର୍ଡ଼ ଯେ କାହିଁକି ଏପରି ତରତର ହୋଇ ସହର ଛାଡ଼ି ଚାଲିଗଲେ ତାହା ବେଶ୍ ବୁଝିହୋଇଗଲା । ଏଲିଜାବେଥ୍ ପ୍ରକୃତ ସତ୍ୟଟା ଜାଣିଯିବା ପୂର୍ବରୁ ତା'ଠାରୁ ଦୂରକୁ ଚାଲିଯିବାହିଁ ତାଙ୍କର ଉଦ୍ଦେଶ୍ୟ ଥିଲା । କିନ୍ତୁ ସେ ଚାଲିଯିବାଟାହିଁ ପ୍ରମାଣ କରିଦେଲା ଯେ ହେଞ୍ଚାର୍ଡ଼ ତା'ର ପ୍ରକୃତ ବାପା ନୁହନ୍ତି । ଝିଅକୁ ଏସବୁ ବୁଝାଇ କହିବା ଆଉ ନ୍ୟୁସନ୍‌ଙ୍କ ପକ୍ଷରେ କଷ୍ଟକର ହେଲାନାହିଁ । ସେ ଶୁଣି ବିସ୍ମିତ ହେଲା ଯେ ତା ବାପାଙ୍କୁ ଭଣ୍ଡିଦେବା ଲାଗି ହେଞ୍ଚାର୍ଡ଼ ମିଥ୍ୟାର ଆଶ୍ରୟ ନେଇ ସେ ମରିଗଲାଣି ବୋଲି ବି କହିଦେଇଥିଲେ ।

ତା ହେଲେ ବାପା, ଆପଣଙ୍କଠାରୁ ମୋତେ ଦୂରେଇ ରଖିବା ଲାଗି ହିଁ ସେ ଏତେ କାଣ୍ଡ କରିଥିଲେ; ନୁହେଁ ?

ହସି ହସି ନ୍ୟୁସନ୍ କହିଲେ, "ମୋ ବୋକାମିରୁହିଁ ସେସବୁ ସମ୍ଭବ ହୋଇପାରିଲା, ମାଆ ! ମୁଁ ପରା ଏପର୍ଯ୍ୟନ୍ତ ବିଶ୍ୱାସ କରିଥିଲି ଯେ ସେ ମୋତେ ସତକଥା କହିଛନ୍ତି । ଏହି ଗତ ସପ୍ତାହରେ ଫଲ୍‌ମାଉଥ୍‌ରେ ଜଣେ ଲୋକଠାରୁ

ଶୁଣିଲି ଯେ ତୁ ବଞ୍ଚିଛୁ; ମୋତେ ଦୁଇ ଚାରିଦିନ ପୂର୍ବରୁ ସେ ତତେ ଦେଖିଛନ୍ତି । ଖବରଟା ଶୁଣିବାକ୍ଷଣି ମୁଁ ପୁଣି ଦୌଡ଼ିଆସିଲି । '

ବିସ୍ମିତ ହୋଇ କିଛି ସମୟ ବସିଯିବା ପରେ ଏଲିଜାବେଥ୍ କହିଲା, ''ବିଦାୟ ଦେବାବେଳେ ମୁଁ ତାଙ୍କୁ କହିଲି, ମୁଁ କୌଣସି ଦିନ ତାଙ୍କୁ ଭୁଲିପାରିବି ନାହିଁ; କିନ୍ତୁ ବାପା, ମୁଁ ଦେଖୁଛି ସେଭଳି ଲୋକକୁ ମୁଁ କୌଣସି ଦିନ କ୍ଷମା ଦେଇପାରିବିନାହିଁ; ଆଜିଠାରୁହିଁ ତାଙ୍କୁ ଭୁଲିଯିବା ଉଚିତ ହେବ ।''

## ଚଉଦ

କାଷ୍ଟରବ୍ରିଜ୍‌ଠାରୁ ଚାଳିଶ ପଚାଶ ମାଇଲ ଦୂରରେ ଗୋଟିଏ ଛୋଟ ଗାଆଁରେ ହେଞ୍ଚାର୍ଡ଼ଙ୍କୁ ଖଣ୍ଡେ କାମ ମିଳିଗଲା । ପ୍ରଥମେ ସେ ଭାବିଥିଲେ, ସେହି ଅଞ୍ଚଳ ଛାଡ଼ି ଦୂରକୁ ଚାଲିଯିବେ; କିନ୍ତୁ ପରେ ଭାବିଲେ ଏଲିଜାବେଥ୍‌ଠାରୁ ଏତେ ଦୂରରେ ଯାଇ ରହିଲେ ଜୀବନଟା ଦୁର୍ବହ ହୋଇଯିବ; ବରଂ ଏଇଠି ଏହି ରାସ୍ତାପାଖ ଗାଆଁରେ ରହିଗଲେ ଅନ୍ତତଃ ବାଟୋଇମାନଙ୍କଠାରୁ କାଷ୍ଟରବ୍ରିଜ୍‌ର ଖବର ଟିକିଏ ମିଳୁଥିବ; ସୁଯୋଗ ଘଟିଲେ ଏଲିଜାବେଥ୍‌ର ଖବର ବି ମିଳିଯାଇପାରେ ।

ଦିନକର କଥା । ସଡ଼କ କରର ଗୋଟିଏ ଜମିରୁ ସେ ଗହମ କାଟୁଛନ୍ତି, ଶୁଣିଲେ କାଷ୍ଟରବ୍ରିଜ୍ ବିଷୟରେ ଗପ କରିକରି ଦୁଇ ଜଣ ଶଗଡ଼ିଆ ଶଗଡ଼ ନେଇ ଯାଉଛନ୍ତି । ସେ ଦୌଡ଼ିଯାଇ ପଚାରିଲେ, ''କ'ଣ ଭାଇ, କାଷ୍ଟରବ୍ରିଜ୍‌ରୁ ଫେରିଲ କି ?''

ଜଣେ ଶଗଡ଼ିଆ କହିଲା, ''ହଁ ଭାଇ, ଶଗଡ଼ ଚାଲିଲେ ତ ପେଟ ଚାଲୁଛି; ଗହମ ନେଇ କାଷ୍ଟରବ୍ରିଜ୍ ଯାଇଥିଲୁ ।''

ଆଗ୍ରହାନ୍ୱିତ ହୋଇ ହେଞ୍ଚାର୍ଡ଼ ପଚାରିଲେ, ''ଆଉ, ସେଠିକା ଖବର ସବୁ କ'ଣ ?''

—କାହିଁ, ଆଉ ଅଧିକା କିଛି ନାହିଁ ତ ?

—ନାହିଁ, ମୁଁ ଶୁଣିଥିଲି ସେ ଗହମ ଗୋଦାମ ମାଲିକ ଫର୍‌ଫ୍ରେ ସାହେବ କୁଆଡ଼େ ଆଉ ଥରେ ବାହା ହେଉଛନ୍ତି ଯେ, ସେହି କଥା ପଚାରୁଥିଲି ।

—ଆରେ ହଁ, ହଁ; ଆମେ ବି ସେଇଆ ଶୁଣିଲୁ । ଏହି ସେଣ୍ଟ ମାର୍ଟିନ୍ ଉତ୍ସବ ଦିନ ତ ବାହାଘର !

ଖବରଟା ଶୁଣୁ ଶୁଣୁ ଏଲିଜାବେଥ୍ ଜେନ୍‌କୁ ଦେଖିବାଲାଗି, ତା ବିବାହ ଉତ୍ସବରେ ଯୋଗଦେବାଲାଗି ହେଞ୍ଚାର୍ଡ଼ଙ୍କ ମନ ଭିତରେ ଗୋଟିଏ ଅଭିଳାଷ ଜାଗିଉଠିଲା । ସେ ଯଦି ଆଉ ଥରେ ତା ପାଖକୁ ଯାଇପାରନ୍ତେ, ତାକୁ କ୍ଷମାଭିକ୍ଷା କରି ଆଉ ଥରେ ତା'ର ସ୍ନେହ-ଅନୁରାଗ ଲାଭପାଇଁ ଚେଷ୍ଟା କରନ୍ତେ; କେତେ ଭଲ ନହୁଅନ୍ତା ସତେ ! ଗହମ କ୍ଷେତରେ କାମ କରୁଥାଆନ୍ତି, ମନେ ମନେ ଏସବୁ ଭାବୁଥାଆନ୍ତି ହେଞ୍ଚାର୍ଡ଼ । ଏପରି ଭାବି ଭାବି ଦୁଇଦିନ କଟିଗଲା । ତୃତୀୟ ଦିନ ସକାଳ ବେଳକୁ ମନର ସବୁ ଦ୍ୱନ୍ଦ୍ୱ, ସକଳ ଦ୍ୱିଧା ଦୂର କରି ସ୍ଥିର କରିନେଲେ ସେ ଯାଇ ନିଶ୍ଚୟ ତା'ର ବିବାହ ଉତ୍ସବରେ ଯୋଗଦେବେ ।

ସେଣ୍ଟ ମାର୍ଟିନ୍ ଉତ୍ସବର ଦୁଇଦିନ ପୂର୍ବରୁ ସେ କାଷ୍ଟରବ୍ରିଜ୍ ଉଦ୍ଦେଶ୍ୟରେ ବାହାରିପଡ଼ିଲେ । ଦ୍ୱିତୀୟ ଦିନ ସନ୍ଧ୍ୟାକୁ ଆସି ପହଞ୍ଚିଗଲେ ସଟ୍‌ସ ଫୋର୍ଡ଼ ସହରରେ । ଚାଲି ଚାଲି ହାତପାଦ ଥକ୍‌କା ହୋଇଯାଇଥାଏ, ତେଣୁ ସେ ଭାବିଲେ ରାତିଟା ସେଠାରେ ବିଶ୍ରାମ ନେଇ ତା ପରଦିନ ବାହାରିପଡ଼ିବେ । ବିବାହ ଉତ୍ସବରେ ଯୋଗଦେବାପାଇଁ ଟିକିଏ ପ୍ରସ୍ତୁତ ହୋଇଯିବାକୁ ବି ସମୟ ମିଳିଯିବ । କ୍ଷେତ-ମଜୁରିଆ ପୋଷାକ ଖଣ୍ଡିକ ବ୍ୟତୀତ ଲୁଗାପଟା ବୋଲି ତାଙ୍କର ଆଉ କିଛି ନଥାଏ । ବଜାରକୁ ଯାଇ ହଳେ ଚଳନୀୟ ପୋଷାକ କିଣିପକାଇଲେ । ଆହୁରି ଗୋଟିଏ କଥା ବାକି ଥାଏ— ବିବାହ ଉତ୍ସବରେ ଉପହାର ଦେବାଲାଗି କିଛି ଗୋଟାଏ ଜିନିଷ କିଣିବାକୁ ପଡ଼ିବ ।

ଦୋକାନ ଦେଖି ଦେଖି ହେଞ୍ଚାର୍ଡ଼ ବଜାରର ଏମୁଣ୍ଡରୁ ସେମୁଣ୍ଡଯାଏଁ ବୁଲିଗଲେ । ପାଖରେ ପଇସା ଥାଏ କମ୍, ଦେଖିଲେ କୌଣସି ଜିନିଷ କିଣି ହେଉନାହିଁ । ଛୋଟକୋଟିଆ ଜିନିଷ କିଛି ଆଖିରେ ପଡ଼ିପାରେ ଭାବି ସେ ଆଉ ଥରେ ଦୋକାନ ଦୋକାନ ବୁଲି ଦେଖିବାକୁ ଲାଗିଲେ । ଦେଖିଲେ, ଗୋଟିଏ ଦୋକାନରେ ଗୋଟିଏ ରୁପେଲି ରଙ୍ଗର ପଞ୍ଜୁରି ଭିତରେ ସୁନେଲି ରଙ୍ଗର ଛୋଟ ଚଢ଼େଇଟିଏ ବିକ୍ରିପାଇଁ ଝୁଲୁଛି । ଉପହାରଟି ତାଙ୍କ ମନକୁ ବେଶ୍ ପାଇଲା । ବୁଝିଲେ ଦର ବି ବିଶେଷ ନୁହେଁ; ସେ କିଣିପାରିବେ । ଆଉ ଅନ୍ୟଆଡ଼େ ନଯାଇ ସେ ପଞ୍ଜୁରି ସହିତ ପକ୍ଷୀଟି କିଣିପକାଇଲେ । ଦୋକାନୀ ଖଣ୍ଡେ ଭଲ ଖବରକାଗଜରେ ଉପହାରଟି ବାନ୍ଧିଦେଲା । କାଷ୍ଟରବ୍ରିଜ୍ ସେଠାରୁ ବିଶେଷ

ଦୂରନୁହେଁ । ହେଞ୍ଚାର୍ଡ଼ ତା ପରଦିନ ଖାଇପିଇ ବିଶ୍ରାମ ନେଇ ପଞ୍ଜୁରିବନ୍ଧ ପକ୍ଷୀଟି ନେଇ କାଷ୍ଟରବ୍ରିଜ୍ ବାହାରିପଡ଼ିଲେ ।

କାଷ୍ଟରବ୍ରିଜ୍‌ରେ ପହଞ୍ଚିଲାବେଳକୁ ବେଳଗଡ଼ି ସନ୍ଧ୍ୟା ହେବାକୁ ବସିଥାଏ । ସେ ସିଧା ଫର୍‌ଫ୍ରେଙ୍କ ଘରକୁ ଚାଲିଗଲେ । ଫାଟକ ପାଖରେ ପହଞ୍ଚୁ ପହଞ୍ଚୁ ଘର ଭିତରର ନାଚ, ଗୀତ ଓ ଭୋଜି ଖାଇବାକୁ ଆସିଥିବା ଲୋକଙ୍କର ହତ କୌତୁକ ଶବ୍ଦ ଆସି ତାଙ୍କ କାନରେ ପଡ଼ିଥିଲା । ହେଞ୍ଚାର୍ଡ଼ ଦାଣ୍ଡବାଟ ଛାଡ଼ି ଚାଲିଗଲେ ବାରିପଟକୁ । ବାରିପଟ ଫାଟକ ଖୋଲି ବଗିଚାରେ ପଶିଲେ । ସେଠାରେ ଗୋଟିଏ ଲତାତଳେ ପଞ୍ଜୁରିଟି ଥୋଇଦେଇ ସେ ଯାଇ ରୋଷେଇଘର ପାଖରେ ପହଞ୍ଚିଗଲେ । ସେ ଭାବିଲେ, ପରେ ଆସି ପଞ୍ଜୁରିଟି ନେଇ ଏଲିଜାବେଥକୁ ଉପହାର ଦେବେ । ତାଙ୍କୁ ରୋଷଘର ପାଖରେ ଦେଖି ଜଣେ ବୟସ୍କା ଭଦ୍ରମହିଳା ସଙ୍ଗେ ସଙ୍ଗେ ଯାଇ ଏଲିଜାବେଥ୍‌କୁ ଖବରଦେଲେ, ''କେହି ଜଣେ ବୁଢ଼ା ଆସି ଆପଣଙ୍କ ସହିତ ସାକ୍ଷାତ୍ କରିବାକୁ ରୋଷଘର ପାଖରେ ଅପେକ୍ଷା କରିଛନ୍ତି; କହୁଛନ୍ତି ସେ କୁଆଡ଼େ ଆପଣଙ୍କର ଅନେକଦିନ ତଳର ବନ୍ଧୁ ।'' ଖବରଟା ପାଇ ଏଲିଜାବେଥ୍ ରୋଷଘର ପାଖକୁ ଚାଲିଆସିଲା; କିନ୍ତୁ ପାଖକୁ ଆସି ହେଞ୍ଚାର୍ଡଙ୍କୁ ଦେଖିଦେବାମାତ୍ରେ, ''ଓଃ ! ମିଷ୍ଟର୍ ହେଞ୍ଚାର୍ଡ଼ ଆସିଛନ୍ତି !'' କହିଦେଇ ଭିତରକୁ ଫେରିଯିବାକୁ ବସିଲା ।

ତା'ର ହାତ ଧରିପକାଇ ହେଞ୍ଚାର୍ଡ଼ କହିଲେ, ''କ'ଣ କହିଲୁ ଏଲିଜାବେଥ୍ ? ମିଷ୍ଟର୍ ହେଞ୍ଚାର୍ଡ଼ ! ହତଭାଗା କହ, ଅକର୍ମଣ୍ୟ କହ, ବୁଢ଼ାଟା କହ; ଯାହା ଇଚ୍ଛା ତା' କହ ମାଆ, ହେଲେ ଏପରି ଦରଦହୀନଭାବରେ କହନାହିଁ । ତୋ ହୃଦୟରେ ମୋ ପାଇଁ କ'ଣ ଟିକିଏ ବି ସ୍ଥାନ ଦେଇପାରିବୁନାହିଁ, ମାଆ ?''

ଧୀରେ ଧୀରେ ତାଙ୍କ ହାତରୁ ହାତ ଖସାଇଆଣି ଦୁଃଖିତ ହୋଇ ଏଲିଜାବେଥ୍ କହିଲା, ''ମୁଁ ତ ଆପଣଙ୍କୁ ସବୁଦିନ ଭଲପାଇଥାନ୍ତି । କିନ୍ତୁ ଯେପରି କଦର୍ଯ୍ୟଭାବରେ ଆପଣ ମୋତେ ଠକିବାକୁ ବସିଥିଲେ, ତା ଜାଣିବା ପରେ ମୁଁ ଆଉ ଆପଣଙ୍କୁ କିପରି ଭଲପାଇପାରିବି, କୁହନ୍ତୁ ?''

ହେଞ୍ଚାର୍ଡ଼ କ'ଣ ବୁଝାଇଦେବାକୁ ଯାଉଥିଲେ, ଅଧର ଦୁଇଟି ତାଙ୍କର ଖୋଲିସାରିଥିଲା; କିନ୍ତୁ ସେ କୌଣସି କଥା ନକହି ଚୁପ୍ ହୋଇଗଲେ । ଭାବିଲେ, ସେଠାରେ ସେ ଅବସ୍ଥାରେ ସେ କିପରି ବା ସବୁକଥା ବୁଝାଇ ଦେଇପାରିବେ ? କିପରି ବୁଝାଇଦେବେ ଯେ ତା ମାଆଙ୍କର ସେହି ଜଉମୁଦଦିଆ ଚିଠିଖଣ୍ଡିକ ପଢ଼ିବା

ପର୍ଯ୍ୟନ୍ତ ତାଙ୍କୁ ବି ଏହିପରି ଠକି ଦିଆଯାଇଥିଲା । ତାଙ୍କୁ ବି ଜାଣିବାକୁ ଦିଆଯାଇନଥିଲା ଯେ ତାଙ୍କର ନିଜର ଆଦରର ଝିଅ ଏଲିଜାବେଥ୍ ଜେନ୍ କେବେଠୁ ମରି ହଜିଗଲାଣି । କିପରି ବା ବୁଝାଇଦେଇପାରିବେ ଯେ ନାବିକ ନ୍ୟୁସନ୍‌ଙ୍କୁ ସେ ଯେଉଁ ମିଛଗୁଡ଼ାକ କହିଦେଇଥିଲେ, ସେସବୁ କେବଳ ସରଳା ଏଲିଜାବେଥ୍‌କୁ ଚିରଦିନଲାଗି ଝିଅରୂପେ ପାଇବାଲାଗି ଗୋଟାଏ ନିରାଶ ଲୋକର କିଛିଟା ନିଷ୍ଫଳ ପ୍ରଚେଷ୍ଟା ମାତ୍ର ଏବଂ ଯଦି ବା ସେ ଏସବୁ ବୁଝାଇ ଦେଇପାରିବେ, ଲାଭଟା କ'ଣ ହେବ ? ଯେତେବେଳେ ଏଲିଜାବେଥ୍ ମନରୁ ତାଙ୍କ ପ୍ରତି ଭାବଭକ୍ତି ସବୁ ମରିଗଲାଣି, ସେ ସବୁକୁ ସେ କଦାପି ପୁନର୍ଜୀବିତ କରିଦେଇ ପାରିବନାହିଁ ।

ତେଣୁ ଆତ୍ମପକ୍ଷ ସମର୍ଥନ କରି ସେ ପଦେ ବି କିଛି କହିଲେନାହିଁ । ଏଲିଜାବେଥ୍ ମନରେ ଆଘାତ ଲାଗିଛି ଦେଖି ସେ କୋମଳ କଣ୍ଠରେ ଶୁଣାଇଦେଲେ, ''ମୋଲାଗି ତୋ ହସ ଖୁସିରେ ଆଞ୍ଚ ଆସିବା ଉଚିତନୁହେଁ, ମାଆ ! ମୁଁ ଏଠିକି ଆସି ହିଁ ଭୁଲ କରିଛି; ହେଲେ ଆଉ କୌଣସି ଦିନ ଆସି ତତେ ଦୁଃଖ ଦେବିନାହିଁ । ଭଗବାନ୍ ତୋର ମଙ୍ଗଳ କରନ୍ତୁ, ମୁଁ ଯାଉଛି ।'' ଏହିତକ କହିଦେଇ ସେ ଯେଉଁ ବାରିବାଟଦେଇ ଆସିଥିଲେ, ସେହି ବାରିବାଟ ଦେଇ ଚାଲିଗଲେ । ଘଟଣାଟା ବିଷୟରେ ଏଲିଜାବେଥ୍ ଦ୍ୱିତୀୟ ଥର ଭାବିବା ପୂର୍ବରୁ ସେ ଦୃଷ୍ଟିପଥରୁ ଅନ୍ତର୍ହିତ ହୋଇଯାଇଥିଲେ ।

କେତେକ ସପ୍ତାହ ପରର କଥା । ଏଲିଜାବେଥ୍ ଜେନ୍ ସେତେବେଳକୁ ଘରର କର୍ତ୍ତ୍ରୀହୋଇ ଆନନ୍ଦ ଉତ୍ସବ ଭିତରେ ଅନେକ ଦିନ କଟାଇସାରିଲାଣି । ଦିନେ ବଗିଚାରେ ବୁଲୁ ବୁଲୁ ସେ ଦେଖିଲା, ଗୋଟିଏ ଲତାତଳେ କାଗଜ ବନ୍ଧା ହୋଇ କ'ଣ ଜିନିଷଟାଏ ଥୁଆହୋଇଛି । ଜିନିଷଟା ଆଣି କାଗଜଟା ଖୋଲିବାରୁ ଦେଖାଗଲା ସେଇଟି ଗୋଟିଏ ପଞ୍ଜୁରି, ତା ଭିତରେ ରହିଛି ଗୋଟିଏ ମଲା ଚଢ଼େଇର ଦେହାବଶେଷ– ମୁଠାଏ ପର ଓ କେତେ ଖଣ୍ଡି ହାଡ଼ ! ବିଚରା ଚଢ଼େଇଟି ବୋଧହୁଏ ଭୋକଶୋଷରେ ସଢ଼ି ସଢ଼ି ମରି ଶୁଖିଯାଇଛି । ପଞ୍ଜୁରିଟି ଯେ ସେଠାକୁ କିପରି ଆସିଲା, ତାହା କେହି କହିପାରିଲେନାହିଁ । ଶେଷରେ ଜଣେ ଚାକରର ମନେପଡ଼ିଲା । ସେ କହିଲା, ''ସାଆନ୍ତାଣୀ, ଅବିକା ମନେପଡ଼ୁଛି । ଆପଣଙ୍କ ବାହାଘର ଦିନ ଗୋଟାଏ ଚଷାର ହଳିଆଟାଏ କି କ'ଣ, ଏହି ବାଟଦେଇ ଆସି ରୋଷଘର ପାଖରେ ଆପଣଙ୍କୁ କ'ଣ ଖବର ଦେଉଥିଲା; ମୁଁ ଦେଖିଛି । ସେହି ଲୋକଟା ଏ ଜିନିଷଟା ଧରିଥିଲା ।

ମନେପଡୁନି ? ସେ ଲୋକଟା ରୋଷଘର ପାଖରେ ଆପଣଙ୍କ ସହିତ କ'ଣ ସବୁ କଥାଭାଷା ହେଲା ଯେ ?— ସେହି ଲୋକଟା ପଞ୍ଜୁରିଟାକୁ ଆଣି ଏଇଠି ଥୋଇଦେଇଥିଲା, ଫେରିଗଲା ବେଳେ ନେବାକୁ ଭୁଲିଗଲା କି କ'ଣ !''

ଏଲିଜାବେଥ୍ ଆଗରେ ସବୁ ବିଷୟ ପ୍ରାଞ୍ଜଳ ହୋଇଗଲା । ସେ ନିଶ୍ଚିତ ଭାବରେ ଜାଣିଗଲା ଯେ ତା'ରି ବିବାହ ଉତ୍ସବରେ ଉପହାର ଦେବାଲାଗି ହେଞ୍ଚାର୍ଡ୍ ହିଁ ଏହି ପଞ୍ଜୁରିବଦ୍ଧ ପକ୍ଷୀଟି ନେଇ ଆସିଥିଲେ । ମନେପଡ଼ିଲା, ସେଦିନ ସେ କୌଣସି ଅନୁଶୋଚନା ବା ଓଜର-ଆପତ୍ତି ପ୍ରକାଶ କରି ନଥିଲେ । ଓଜର ଆପତ୍ତି କରିବାଟା ତ ତାଙ୍କ ସ୍ୱଭାବ ବିରୁଦ୍ଧ, ଏ ସାମାନ୍ୟ ଉପହାରଟି ନିଶ୍ଚୟ ତାଙ୍କର ଅନୁଶୋଚନାର ନିଦର୍ଶନ । ଅଭାଗା ଚଢ଼େଇଟିକୁ ବଗିଚାରେ ପୋତିଦେଇ ପଞ୍ଜୁରିଟିକୁ ଚାହିଁ ଦେଉ ଦେଉ ତା'ର ଆଖି ଲୁହ ଛଳ ଛଳ ହୋଇଆସିଲା । ନିଃସଙ୍ଗ ନିଃସହାୟ ହେଞ୍ଚାର୍ଡ୍‌ଙ୍କ ବିଷୟ ଭାବି ଭାବି ତା ଅନ୍ତରରୁ ସବୁ ରାଗ, ସବୁ ଅଭିମାନ କୁଆଡ଼େ ଦୂରେଇଗଲା ।

ଫର୍‌ଫ୍ରେ ଆସି ଘରେ ପହଞ୍ଚୁ ପହଞ୍ଚୁ ସେ ତାଙ୍କୁ ସବୁକଥା କହିଦେଇ ଅନୁରୋଧ କଲା, ''ଚାଲନ୍ତୁ, ହେଞ୍ଚାର୍ଡ୍ କେଉଁଠି ଅଛନ୍ତି ଖୋଜିବା; ବିଚରା ବଡ଼ ଅଶାନ୍ତିରେ କାଳ କାଟୁଥିବେ । ଏ ଅବସ୍ଥାରେ ତାଙ୍କୁ ଅନ୍ତତଃ ଟିକିଏ ଆରାମରେ ରଖିବାଲାଗି ଚେଷ୍ଟା କରିବା ଆମର ଉଚିତ ହେବ ।''

ଫର୍‌ଫ୍ରେ ସଙ୍ଗେ ସଙ୍ଗେ ଏ ପ୍ରସ୍ତାବରେ ରାଜିହୋଇଗଲେ । ଅନୁସନ୍ଧାନ ଆରମ୍ଭ ହୋଇଗଲା; କିନ୍ତୁ ହେଞ୍ଚାର୍ଡ୍ କୁଆଡ଼େ ଗଲେ ତାହା କେହି କହିପାରିଲେ ନାହିଁ । ବହୁ ଖୋଜଖବର ନେବା ପରେ ଜଣେ କେହି କହିଲା— ବାହାଘର ଦିନ ରାତିରେ ତାଙ୍କୁ ସେ ମେଲ୍‌ଚେଷ୍ଟର ରାସ୍ତାରେ ଯାଉଥିବାର ଦେଖିଛି । ତା' ପରଦିନ ଖଣେ ଘୋଡ଼ାଗାଡ଼ି ନେଇ ଫର୍‌ଫ୍ରେ ଓ ଏଲିଜାବେଥ୍ ମେଲ୍‌ଚେଷ୍ଟର ପଥରେ ବାହାରିପଡ଼ିଲେ । କେତେ ବାଟ ଯିବା ପରେ ସଡ଼କ ମରାମତି କରୁଥିବା ଜଣେ ଲୋକଠାରୁ ଜଣାଗଲା ଯେ ହେଞ୍ଚାର୍ଡ୍‌ଙ୍କ ପରି ଜଣେ କେହି ଲୋକ ୱେଦରବରି ଗାଆଁ ପାଖରୁ ମେଲ୍‌ଚେଷ୍ଟର ସଡ଼କ ଛାଡ଼ି ଏଗ୍‌ଡ଼ନ୍ ଆଡ଼େ ଚାଲିଯିବାର ସେ ଦେଖିଛି । ଏଗ୍‌ଡ଼ନ୍ ଗାଆଁଟା କାଷ୍ଟରବ୍ରିଜ୍‌ଠାରୁ ପ୍ରାୟ କୋଡ଼ିଏ ମାଇଲ ଦୂରରେ । ସେ ଅଞ୍ଚଳକୁ ଯାଇ ଖୋଜଖବର ନେଉ ନେଉ ସନ୍ଧ୍ୟା ହୋଇଗଲା । ବିଫଳ ହୋଇ ସେମାନେ କାଷ୍ଟରବ୍ରିଜ୍ ଫେରିଆସିବାକୁ ବସିଛନ୍ତି, ଦେଖିଲେ ଜଣେ କେହି ଲୋକ ସଡ଼କ ପାରହୋଇ କ୍ଷେତ ମଝିରେ ଥିବା ଗୋଟିଏ ଭଙ୍ଗା କୁଡ଼ିଆ ଭିତରେ ଯାଇ

ପଶିଲା । ଲୋକଟାର ଚାଲିବା ଢଙ୍ଗ ଦେଖି ଏଲିଜାବେଥ୍ କହିଲା, ''ଏ ଲୋକଟା ଠିକ୍ ଆମ ଗୋଦାମ ଚାକର ଆବେଲ୍ ହ୍ୱିଟିଲ ପରି ଦେଖାଯାଉଛି । କିନ୍ତୁ ଇଏ କାଷ୍ଟରବ୍ରିଜ୍‌ରୁ ଏତେ ଦୂରକୁ ଆସିଲା କିପରି ?''

ଫର୍‌ଫ୍ରେଙ୍କର ମନେପଡ଼ିଲା, ଆବେଲ୍ ହ୍ୱିଟିଲ୍ ପ୍ରାୟ ମାସେ ହେବ କାମକୁ ଯାଉନାହିଁ । କାହାକୁ କିଛି ନକହି ନପୋଛି ସେ କେଉଁଆଡ଼େ ଚାଲିଯାଇଛି । କୌତୂହଳୀ ହୋଇ ଦିହେଁ ଯାଇ କୁଡ଼ିଆ ପାଖରେ ପହଞ୍ଚିଗଲେ । ଛୋଟ କୁଡ଼ିଆଟିଏ । କାନ୍ଥବାଡ଼ ଭୁଶୁଡ଼ି ପଡ଼ିଲାଣି । ଚାଳରେ କଣା ଫୁଟିଗଲାଣି । ବିଲମାନର ଶୁଖିଲା ପତ୍ରଗୁଡ଼ାକ ପବନରେ ଉଡ଼ିଆସି ଦୁଆରମୁହଁରେ ଜମିଗଲାଣି । କବାଟଟା ଅଧା ଖୋଲାଥାଏ । ଫର୍‌ଫ୍ରେ କବାଟରେ ହାତ ମାରି, 'କିଏ ଅଛ' ବୋଲି ଡାକିଲେ । ଭିତରୁ ସେ ଲୋକଟି ବାହାରି ଆସିଲା । ଏଲିଜାବେଥ୍ ଠିକ୍ ସନ୍ଦେହ କରିଥିଲେ; ସେ ଲୋକଟା ଆବେଲ୍ ହ୍ୱିଟିଲ୍ ।

ଗଭୀର ଦୁଃଖରେ ମୁହଁଟି ତା'ର କଳାକାଠ ପଡ଼ିଯାଇଥାଏ । ପ୍ରଥମେ ସେ ଫରଫ୍ରେ ଓ ତାଙ୍କ ଭାର୍ଯ୍ୟାଙ୍କୁ ଚିହ୍ନି ହିଁ ପାରିଲାନାହିଁ; କିନ୍ତୁ ଚିହ୍ନିଦେବାମାତ୍ରେ ତା ମୁହଁରୁ କାନ୍ଦ ବାହାରିପଡ଼ିଲା । ଆଖିରୁ ବୋହିପଡ଼ିଲା ଧାର ଧାର ଲୁହ । ସେ କାନ୍ଦି କାନ୍ଦି କହିଲା, ''ସାଆନ୍ତେ, ମୋ ଉପରେ ସିନା ସେ ଚିଡୁଥିଲେ, ହେଲେ ମାଆ ବଞ୍ଚିଥିଲାଯାକ ବୁଢ଼ୀ ପ୍ରତି ତାଙ୍କର ଭାରି ଦୟା ଥିଲା ।''

ଡୋନାଲ୍‌ଡ ପଚାରିଲେ, ''ଆରେ ତୁ କାହା କଥା କହୁଛୁ ଆବେଲ୍ ?''

—ହେଞ୍ଚାର୍ଡ୍ ସାଆନ୍ତଙ୍କ କଥା, ଓଃ, ତେବେ ଆପଣ କ'ଣ ଜାଣିନାହାନ୍ତି ? ସେ ଚାଲିଗଲେ ସାଆନ୍ତେ, ଅଧଘଣ୍ଟାଏ ହୋଇଗଲାଣି ।

ଏଲିଜାବେଥ୍‌ର ଛାତିଭିତରଟା ଥରିଉଠିଲା । ସେ ପଚାରିଦେଲା, ''ମରିଯାଇନାହାନ୍ତି ତ ?''

''ହଁ ସାଆନ୍ତାଣୀ, ସେ ଚାଲିଗଲେ । ମୋ ବୁଢ଼ୀ ମାଆ ପ୍ରତି ତାଙ୍କର ସବୁବେଳେ ଦୟା ଥାଏ । କାଠଟେ, କୋଇଲା ଦି'ଟା, ଆଳୁଗଣ୍ଡେ... ବୁଢ଼ୀ ଯେତେବେଳେ ଯାହା ଲୋଡ଼ିବ, ସାଆନ୍ତେ ମୋର ସବୁ ଦେଉଥିଲେ । ତେବେ ଆପଣଙ୍କ ବାହାଘର ଦିନ ରାତିରେ ସାହିମୁଣ୍ଡରେ ଦେଖିଲି ସାଆନ୍ତେ ଚାଲିଯାଉଛନ୍ତି । ମୋତେ କାହିଁକି ଲାଗିଲା, ସେ ଭାରୀ ରୋଗିଲା, ଦୁରୁବଳିଆ ଦେଖାଯାଉଛନ୍ତି । ମୁଁ ତାଙ୍କ ପଛେ ପଛେ ଚାଲିଲି । ଥୋଡ଼େ ବାଟ ଗଲା ପରେ ସେ କହିଲେ, ''ଆରେ, ତୁ କାହିଁକି ଆସୁଛୁ ? ଯା, ଫେରିଯା ।' ହେଲେ ସାଆନ୍ତେ,

ତାଙ୍କୁ ଛାଡ଼ି ପଳେଇ ଆସିବାକୁ ମନହେଲାନାହିଁ । ସେମିତି ତାଙ୍କ ସାଙ୍ଗ ଧରି ଚାଲିଲି । ସେ ପୁଣି ମୋତେ କହିଲେ, ''କିରେ ହ୍ୱିଟିଲ, ତତେ ପରା ଫେରିଯିବାକୁ କହିଲି, ତୁ ଫେରେ କାହିଁକି ଆସୁଛୁ ?'' ମୁଁ କହିଲି, ସାଆନ୍ତେ, ତେମେ ଆପଣଙ୍କ ଦିନମାନ ଖରାପ ପଡ଼ିଛି । ମୋ ମାଆ ବୁଢ଼ୀକି ତେମେ ଆପଣ ଖୁବ୍ ସାହାଯ୍ୟ କରିଛନ୍ତି । ମୁଁ ଗରିବ ହେଲେ କ'ଣ ହେଲା ଯେତିକି ପାରିବି, ତେମେ ଆପଣଙ୍କ ପାଖରେ ରହି ସେତିକି ସେବା କରିବି, ମନାକରନ୍ତୁନାହିଁ ।' ସେଠୁଁ ସେ ଆଉ କିଛି ନକହି ସେମିତି ଚାଲିଲେ । ରାତିସାରା ଚାଲିଲୁ ସାଆନ୍ତେ ! ପାହାନ୍ତିଆ ବେଳକୁ ଟିକିଏ ସିନ୍ଦୁରା ଫାଟି ଫର୍ଚ୍ଚା ହେଲା । ଚାହିଁ ଦେଖିଲି ସାଆନ୍ତଙ୍କ ମୁହଁଟା ଶୁଖିଯାଇଛି; ଦେହଟା ଭଲ ନାହିଁ; ଆଉ ଚାଲିପାରୁନାହାନ୍ତି । ସେତେବେଳକୁ ଆମେ ଆସି ଏହି ପାଖରେ ପାଇଥାଉ । ସଡ଼କ ଉପରୁ ଦେଖିଲି ଏଇଠି ଏ ଭଙ୍ଗା କୁଡ଼ିଆଟି ଖାଲିପଡ଼ିଛି । କହିଲି, ସାଆନ୍ତେ, ଚାଲନ୍ତୁ ସେ କୁଡ଼ିଆରେ ବସି ଟିକିଏ ହାଲିଆ ମାରିବେ ।' ସେତିକିବେଳକୁ ଏ ପାଖ ଗାଆଁର ଜଣେ ଚାଷୀଭାଇ ସାଙ୍ଗରେ ଭେଟ ହୋଇଗଲା । ସବୁଲୋକ ସାଆନ୍ତେ, ସମାନ ନଥାନ୍ତି; ଚଷା ହେଲେ କ'ଣ ହେଲା, ସେ ଭାରି ଦରଦ ଘେଜିବାବାଲା । ଦିହେଁ ମିଶି ଧରାଧରି କରି ସାଆନ୍ତଙ୍କୁ ଆଣି ଏ କୁଡ଼ିଆ ଭିତରେ ବସାଇଦେଲୁ । ଗାଆଁକୁ ଯାଇ ସେ ସାଙ୍ଗେ ସାଙ୍ଗେ ଖଣ୍ଡେ ଖଟିଆ, ଖଣ୍ଡେ ଚଉକି, ବାକି ଦି'ଚାରିଟା ଏଣ୍ଡୁତେଣ୍ଡୁ ଦରକାରୀ ଜିନିଷ ସହିତ କିଛି ଖାଇବା ଜିନିଷ ଆଣି ଏଠି ପହଞ୍ଚାଇଦେଲା । ସାଆନ୍ତେ ଟିକିଏ ଆରାମରେ ଶୋଇଲେ, ହେଲେ ଦେହରେ ଆଉ ଜୋର ଫେରିଆସିଲା ନାହିଁ । ଜମା ତ ଖାଇଲେନାହିଁ । ଖାଇବାକୁ ଯାଚିଲେ, କହନ୍ତି, 'ଭୋକନାହିଁ' । ଆଧାର ବନ୍ଦ ହୋଇଗଲେ ମଣିଷ ଆଉ କେତେ ଦିନ ବଞ୍ଚିବ କହିଲ, ସାଆନ୍ତାଣୀ ? ଶୁଖି ଶୁଖି କଣ୍ଟା ହୋଇଗଲେ, ଆଜି ପ୍ରାଣ ଛାଡ଼ିଗଲା ।

''ହାୟ ! ହାୟ !! କି ଦୁଃଖର ମରଣ ସତେ !'' ଡୋନାଲ୍ଡ଼ ମୁହଁରୁ ସମବେଦନାର ବାଣୀ ବାହାରିଆସିଲା; କିନ୍ତୁ ଏଲିଜାବେଥ୍ ଏତେ ଗଭୀର ଭାବରେ ଶୋକସନ୍ତପ୍ତ ହୋଇପଡ଼ିଥିଲା ଯେ, ତା'ର ବାକ୍‌ସ୍ଫୁରଣହିଁ ହେଲା ନାହିଁ । ହ୍ୱିଟିଲ୍ ପୁଣି କହିଲା, ''ମୋ ହାତରେ ସେ ଖଣ୍ଡେ କାଗଜ ଦେଇଯାଇଛନ୍ତି । ମୁଁ ତ ସାଆନ୍ତେ, ଲେଖିପଢ଼ି ଜାଣେନାହିଁ; କି କାଗଜ କ'ଣ କହିବି ? ରହନ୍ତୁ, ଆଣିଦେଉଛି ।''

ଭିତରକୁ ଯାଇ ଆବେଲ୍ ହ୍ୱିଟିଲ୍ ଖଣ୍ଡେ ଛୋଟ କାଗଜ ଆଣିଦେଲା । ସେଥିରେ ଲେଖାଥିଲା :

ମାଇକେଲ୍ ହେଞ୍ଚାର୍ଡ଼ର ଶେଷ ଅଭିଳାଷ—

—ଏଲିଜାବେଥ୍ ଜେନ୍ ଓ ଫରଫ୍ରେଙ୍କୁ ମୋର ମୃତ୍ୟୁ ସମ୍ବାଦ ଦିଆନଯାଉ ଏବଂ ମୋ ପାଇଁ ସେ କୌଣସି ଶୋକ ପ୍ରକାଶ କରନ୍ତୁ ନାହିଁ ।

—ମତେ ଗିର୍ଜା କବରଖାନାରେ କବର ଦିଆନଯାଉ ।

—ମୋ କବର ଉପରେ କେହି ଫୁଲଟିଏ ବି ନଦେଉ ।

—ମୋତେ କେହି ସ୍ମରଣ କରିବା ଆବଶ୍ୟକ ନାହିଁ ।

ମାଇକେଲ୍ ହେଞ୍ଚାର୍ଡ଼ ।

ଏଲିଜାବେଥ୍ ହାତକୁ କାଗଜଟି ବଢ଼ାଇଦେଇ ଡୋନାଲ୍ଡ ଫରଫ୍ରେ କହିଲେ, ''କ'ଣ ଆଉ କରିବା ?''

ଏଲିଜାବେଥ୍ ଆଖିରୁ ଝରିଚାଲିଥିଲା ଅନୁତାପର ଲୁହ । ବହୁ କଷ୍ଟରେ ଲୁହ ପୋଛି ପୋଛି ସେ କହିଲା, ''ହାୟ ! ତାଙ୍କ ହୃଦୟଟା କି ତିକ୍ତତାରେ ଭରି ନଯାଇଥିଲା ସତେ !! ସେଥିପାଇଁ ମୁଁ, ମୁଁ ହିଁ ଦାୟୀ ଡୋନାଲ୍ଡ !

ସେହି ଶେଷଦିନ ସେ ବିଦାୟ ନେଇ ଚାଲିଯିବାବେଳେ ମୁଁ ଯେଉଁ ନିଷ୍ଠୁର ବ୍ୟବହାର ଦେଖାଇଛି, ସେଥିପାଇଁ ମୁଁ ବଡ଼ ଅନୁତପ୍ତ ।''

ଆଉ ଅବଶେଷ ରହିଲା କ'ଣ ? କାଷ୍ଟରବ୍ରିଜ୍ ମେୟରଙ୍କର ଜୀବନଟା ବହୁବର୍ଷ ପୂର୍ବେ ୱେଡ଼େନ୍ ମେଳା ପଡ଼ିଆରେ ମାତାଲ ଅବସ୍ଥାରେ ଯେପରି ନିରାନନ୍ଦ ହୋଇ ଆରମ୍ଭ ହୋଇଥିଲା, ସେ ବିରସ ନିରସ ଅଦ୍ଭୁତ ଜୀବନଟା ଠିକ୍ ସେହିପରି ନିରାନନ୍ଦ ହୋଇ ଶେଷ ହୋଇଗଲା; କିନ୍ତୁ ସେ ଶେଷ ହେବାରେ କି ମହତ୍ତ୍ୱ ରହିନଗଲା ସତେ !

□□□

# ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

ଶିହରଣ ଓ ରୋମାଞ୍ଚ ଦେଇପାରୁଥିବା କାହାଣୀ ବହି କିଶୋରପାଠକମାନଙ୍କୁ ବିମୋହିତ କରେ । ଓଡ଼ିଆ ପିଲାଙ୍କୁ ସେଭଳି ବହି ଯୋଗାଇଦେଇଛି ବିଶ୍ୱସାହିତ୍ୟ ଗ୍ରନ୍ଥମାଳାର ଶତାଧିକ ବହି । ସେମାନେ ଏଇ ବହିଗୁଡ଼ିକ ପଢ଼ି ଆନନ୍ଦ ପାଇଛନ୍ତି, ବିଶ୍ୱସାହିତ୍ୟ ସହ ପରିଚିତ ହୋଇଛନ୍ତି ଓ ବହି ପଢ଼ିବା ଅଭ୍ୟାସ ଲାଭକରିଛନ୍ତି ।

ସବୁ ପୁସ୍ତକମେଳା ଓ ଲାଇବ୍ରେରୀରେ ଛାତ୍ର-ଛାତ୍ରୀମାନେ ଖୋଜିଛନ୍ତି ବିଶ୍ୱସାହିତ୍ୟ ଗ୍ରନ୍ଥମାଳାର ରୋମାଞ୍ଚକର ବହି । ବହୁ ବିଶ୍ୱବିଖ୍ୟାତ ବହିର ସଂକ୍ଷିପ୍ତ ସାର ଏହା ଯୋଗାଇଦିଏ । ବହୁ ଶିକ୍ଷାବିତ୍ ଏ ବହିଗୁଡ଼ିକର ଉଚ୍ଚ ପ୍ରଶଂସା କରିଛନ୍ତି । ସେମାନଙ୍କ ଭିତରୁ ଦୁଇଜଣଙ୍କ ଅଭିମତ ହେଲା –

''Biswa Sahitya Series – deserves commendation by all lovers of Oriya. By providing reading material to the adolescent child, the Publishers have earned the gratitude of all parents.'' ( Dr. Deviprasanna Pattanaik )

''ଏହି ବହିଗୁଡ଼ିକ କିଶୋରବୟସ୍କ ଛାତ୍ର-ଛାତ୍ରୀଙ୍କ ପକ୍ଷେ ବିଶେଷ ଆକର୍ଷଣୀୟ ହୋଇପାରିଛି । ଏହା ସେମାନଙ୍କ କଳ୍ପନାକୁ ଉଦ୍ଦୀପ୍ତ କରିବା ସଂଗେ ସଂଗେ ସାହିତ୍ୟ ପ୍ରତି ଅନୁରାଗ ବଢ଼ାଇଛି ।'' (ଡ଼. ଜାନକୀ ବଲ୍ଲଭ ମହାନ୍ତି)

ସବୁ ପାଠକ ଓ ଅଭିଭାବକଙ୍କର ଏହାହିଁ ଅଭିମତ । ଜଣାଇଲେ ବହିଗୁଡ଼ିକର ପୂରା ତାଲିକା ପଠାଇଦେବୁ ।

ଠିକଣା : **ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨